# ହୀରକ ସ୍ମାରକୀ

୧୩ ଡିସେମ୍ବର, ୨୦୦୯




ବିଜ୍ଞାନ ପ୍ରଚାର ସମିତି, କଟକ

# ହୀରକ ସ୍ମାରକୀ

ବିଜ୍ଞାନ ପ୍ରଚାର ସମିତିର ହୀରକ ଜୟନ୍ତୀ ସମାରୋହ ଉପଲକ୍ଷେ ପ୍ରକାଶିତ

୧୩ ଡିସେମ୍ବର, ୨୦୦୯


ମୁଖ୍ୟ ସମ୍ପାଦକ

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର

ସମ୍ପାଦକ

ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ








ପ୍ରକାଶକ

**ବିଜ୍ଞାନ ପ୍ରଚାର ସମିତି**

ଆମ୍ରପଲ୍ଲୀ, ଦୋଳମୁଣ୍ଡାଇ, କଟକ ୭୫୩ ୦୦୯




**VPS/M3/2009**

भारत के उप-राष्ट्रपति के विशेष कार्य अधिकारी
JOINT SECRETARY &
OFFICER ON SPECIAL DUTY
TO THE VICE-PRESIDENT OF INDIA
नई दिल्ली / NEW DELHI - 110011
TEL : 23016344/23016422
FAX : 23012645



Hamid Ansary
Vice-President of India

# MESSAGE

Hon'ble Vice President of India is happy to know that the Bigyan Prachar Samiti, Cuttack is celebrating its Diamond Jubilee on 13th December, 2009 and publishing a souvenir on this occasion.

Vice President of India extends his greetings and good wishes to the organizers and the participants and wishes the Diamond Jubilee celebrations and the souvenir all success.

New Delhi
11th November, 2009

(P. HARISH)





Shree Ramesh Chandra Majhi
Minister of State (Ind.) Science & Technology and
Information Technology, Orissa

## MESSAGE

I am happy to learn that *Bigyan Prachar Samiti* is going to celebrate its Diamond Jubilee this year on 13th December, 2009. Its outstanding endeavour to make science popular in Oriya Language among the common people in the society is really praiseworthy. In this occasion, publication of a Souvenir to commemorate the celebration is no doubt a novel idea.

I wish grand success of the celebration and wide circulation of the Souvenir. Moreover, I am hopeful Bigyan Prachar Samiti would go ahead in its mission as usual.

(Ramesh Chandra Majhi)



Prof. D. Acharya
Director, Indian Institute of Technology, Kharagpur

## MESSAGE

It is heartening to note that Bigyan Prachar Samiti is celebrating its Diamond Jubilee. The Samiti that started with late Professor Dr. Sadashiv Misra as its President 60 years back, has done yeomen job of popularising Science in Oriya language. The language should not and must not be the barrier in spread of scientific knowledge and temperament to the people who have not adequate exposure to English, the scientific language of the world. The Samiti has done exceedingly well in spreading the scientific knowledge and temper amongst the people who need them most.

I am sure the past success of 60 year will give necessary strength and impetus to the Samiti to take its achievements to newer heights for the next 100 years.

I wish the Diamond Jubilee celebration a great success.

DAcharya

(D. Acharya)






ବିଜ୍ଞାନ ପ୍ରଚାର ସମିତିର ସୁବର୍ଣ୍ଣ ଜୟନ୍ତୀ ସମାରୋହ






ବିଜ୍ଞାନ ପ୍ରଚାର ସମିତିର ବାର୍ଷିକ ଉତ୍ସବ - ୨୦୦୭






ବିଜ୍ଞାନ ପ୍ରଚାର ସମିତିର ୬୧ତମ ପ୍ରତିଷ୍ଠା ଦିବସ

# ଯେଉଁମାନେ ଦାୟିତ୍ୱ ନେଇଛନ୍ତି



ଡଃ ଗୋକୁଳାନନ୍ଦ ମହାପାତ୍ର
ସଭାପତି



ଡଃ କୁଳମଣି ସାମଲ
ଉପସଭାପତି



ଡଃ ବୈଷ୍ଣବ ଚରଣ ସିଂହ
କୋଷାଧ୍ୟକ୍ଷ



ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ
ସମ୍ପାଦକ



ଡଃ ପ୍ରଭାତ କୁମାର ମିଶ୍ର
ସଂଗଠନ ସମ୍ପାଦକ



ଡଃ ନାରାୟଣ ଚନ୍ଦ୍ର ପାଳ
ଯୁଗ୍ମ ସମ୍ପାଦକ



ଡଃ ପ୍ରିୟତମା ଦେଓ
ପ୍ରକାଶନ କମିଟି



ଡଃ ପ୍ରମୋଦ କୁମାର ମହାପାତ୍ର
ଆବାହକ ଅର୍ଥକମିଟି



ଡାଃ ପଦ୍ମଲୋଚନ ନାୟକ
ଅଧ୍ୟକ୍ଷ ଅର୍ଥକମିଟି
ଅଧ୍ୟକ୍ଷ ସଂପାନ କମିଟି



ଡାଃ ନିତ୍ୟାନନ୍ଦ ସ୍ୱାଇଁ
ଆବାହକ
ପ୍ରକାଶନ କମିଟି



ଡାଃ ସୁଦର୍ଶନ ପଟ୍ଟନାୟକ
ଅଧ୍ୟକ୍ଷ
ପୁରସ୍କାର କମିଟି



ଡଃ ବିଜୟ କୁମାର ପଟ୍ଟନାୟକ
ଅର୍ଥ କମିଟି


ଡଃ ସୁବାସିନୀ ଲେଙ୍କା
ଆବାହିକା
ସମ୍ମାନ କମିଟି


ଡା଼ଃ ନିମାଇଁ ଚରଣ ପଣ୍ଡା
ଅର୍ଥକମିଟି


ଡାଃ ଯୋଗମାୟା ପଟ୍ଟନାୟକ
ଅଭ୍ୟର୍ଥନା କମିଟି


ଡାଃ ବରଦା ଚରଣ ମହାନ୍ତି
ଅଭ୍ୟର୍ଥନା କମିଟି


ଡାଃ ବାସୁଦେବ କର
ପ୍ରକାଶନ କମିଟି


ଡଃ ବିଜୟ କୁମାର ପାଣିଗ୍ରାହୀ
ଅଭ୍ୟର୍ଥନା କମିଟି


ଡଃ ଗୌରାଙ୍ଗ ଚନ୍ଦ୍ର ମହାନ୍ତି
ଅଭ୍ୟର୍ଥନା କମିଟି


ଡାଃ ସର୍ବେଶ୍ୱର ସ୍ୱାଇଁ
ସୋଭେନିର କମିଟି


ଡଃ ବିଜୟ କୁମାର ମିଶ୍ର
ଅଭ୍ୟର୍ଥନା କମିଟି


ଡଃ ନିଗମାନନ୍ଦ ମଲ୍ଲିକ
ଅର୍ଥକମିଟି


ଡାଃ ଗୋପାଳ ଚନ୍ଦ୍ର କର
ଅର୍ଥ କମିଟି


ଡାଃ ସଚ୍ଚିଦାନନ୍ଦ ଶତପଥୀ
ଆବାହକ
ସୋଭେନିର କମିଟି



ଡାଃ ଲକ୍ଷ୍ମୀକାନ୍ତ ସାହୁ
ଅର୍ଥ କମିଟି



ଶ୍ରୀ କଲ୍ୟାଣ ମହାପାତ୍ର
ପୁରସ୍କାର କମିଟି



ଶ୍ରୀ ନିରଞ୍ଜନ ପାତ୍ର
ସୋଭେନିର କମିଟି



ଶ୍ରୀ ମହେନ୍ଦ୍ର କୁମାର କାୟସ୍ଥ
ପୁରସ୍କାର କମିଟି



ଡାଃ ନିମାଇଁ ଚରଣ ପରିଡ଼ା
ଅଭ୍ୟର୍ଥନା କମିଟି



ଡଃ ପଦ୍ମନାଭ ବେହେରା
ପ୍ରଚାର କମିଟି



ଡଃ ଶିଶିରକାନ୍ତ ବେହେରା
ଅଭ୍ୟର୍ଥନା କମିଟି



ଡଃ ଭାରତୀ ବେହେରା
ଅର୍ଥ କମିଟି

# ଦର୍ପଣ





ସମ୍ପାଦକୀୟ

# ହୀରକ ଜୟନ୍ତୀ ଅନୁଚିନ୍ତା

ଚାହୁଁ ଚାହୁଁ ଷାଠିଏ ବର୍ଷ ପୂରିଗଲା । କାଲି ଯେ ଏତୁଡ଼ିଶାଳରେ ଜନ୍ମ ହୋଇ କୁଆଁ କୁଆଁ ରାବ ଛାଡ଼ିଥିଲା, ଆଜି ସେ ଜୀବନର ଅପରାହ୍ନରେ ଉପନୀତ । ମୁଁ ବିଜ୍ଞାନ ପ୍ରଚାର ସମିତି କଥା କହୁଛି । କାଲି ପରି ଲାଗୁଛି, ୧୯୪୯ ମସିହା ଅଗଷ୍ଟ ମାସ ୭ ତାରିଖ କଥା । କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ ପରିସରସ୍ଥିତ ଅଧ୍ୟାପକ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ସରକାରୀ ବାସଭବନରେ ହୋଇଥିଲା ଏହାର ଶୁଭାରମ୍ଭ । ବିତିଲା ସମୟ, ଦିନ ପରେ ଦିନ, ମାସ ପରେ ମାସ ଆଉ ବର୍ଷ ପରେ ବର୍ଷ । ଆଜି ହୋଇଗଲା ଷାଠିଏ ବର୍ଷ । ଶୈଶବରୁ କୈଶୋର, କୈଶୋରରୁ ଯୌବନ, ଯୌବନରୁ ପ୍ରୌଢ଼ତ୍ୱ ଏବଂ ପ୍ରୌଢ଼ତ୍ୱରୁ ବୃଦ୍ଧତ୍ୱ – ଖୁବ୍ ଏକ ଲମ୍ବା ରାସ୍ତା । ଜୀବନର ପ୍ରତ୍ୟେକ ସ୍ତରର ସବୁ ରାସ୍ତାକୁ ଖୁବ୍ ସଫଳତାର ସହିତ ଅତିକ୍ରମ କରିଚାଲିଛି ବିଜ୍ଞାନ ପ୍ରଚାର ସମିତି । ଏଥିପାଇଁ ତା' ଦେହରେ କେତେ ଯେ ଚିକିତ୍ସକଙ୍କର ସଂଜୀବନୀର ଧାରା ପ୍ରବାହିତ ହୋଇଛି ଓ କେତେ ଯେ ଶିକ୍ଷାବିତ୍‌ଙ୍କର ଚିନ୍ତାର ମଲମ ପ୍ରଲେପିତ ହୋଇଛି, ବର୍ତ୍ତମାନ ତା'ର ହିସାବ ମିଳିବା ହୁଏତ ଅସମ୍ଭବ । ତଥାପି ବିଜ୍ଞାନ ପ୍ରଚାର ସମିତି ଆଜି ସୁସ୍ଥ, ସବଳ ଆଉ ନିଜ ଗୋଡ଼ରେ ନିଜେ ଠିଆ ହେବାପାଇଁ ସମର୍ଥ । ଷାଠିଏ ବର୍ଷ ବୟସରେ ଯା'ଠାରୁ ଆଉ ଅଧିକ କ'ଣ ବା ଆଶା କରାଯାଇପାରେ ?

ଜରାବିଜ୍ଞାନୀମାନେ କହନ୍ତି, ଷାଠିଏ ବର୍ଷ ବୟସରେ ବୃଦ୍ଧାବସ୍ଥା ଆରମ୍ଭ ହୁଏ । ବୃଦ୍ଧାବସ୍ଥାକୁ ମଧ ସେମାନେ ତିନିଟି ସ୍ତରରେ ବିଭକ୍ତ କରିଥାନ୍ତି । ଷାଠିଏରୁ ପଞ୍ଚସ୍ତରି ବର୍ଷ ପର୍ଯ୍ୟନ୍ତ କୁହାଯାଏ ଯୁବକ ବୃଦ୍ଧ, ପଞ୍ଚସ୍ତରିରୁ ପଞ୍ଚାଅଶୀ ବର୍ଷ ଯାଏ କୁହାଯାଏ ବୃଦ୍ଧ ଓ ପଞ୍ଚାଅଶୀ ବର୍ଷର ପରବର୍ତ୍ତୀ ଅବସ୍ଥାକୁ କୁହାଯାଏ ଅତି ବୃଦ୍ଧ । ଏହି ଦୃଷ୍ଟିରୁ ବିଜ୍ଞାନ ପ୍ରଚାର ସମିତି ଆଜି ଜଣେ ଯୁବକ ବୃଦ୍ଧ ଅର୍ଥାତ୍ ବୃଦ୍ଧାବସ୍ଥା ଉପନୀତ ହୋଇଥିଲେ ମଧ ଯୁବକତ୍ୱ ଏ ପର୍ଯ୍ୟନ୍ତ ବଜାୟ ଅଛି । ତାକୁ ଆଶ୍ରୟ କରିଥିବା ସମସ୍ତଙ୍କ ଆଶା ଓ ଆକାଙ୍‌କ୍ଷାକୁ ସେ ବେଶ୍ ସଫଳତାର ସହିତ ପୂରଣ କରିପାରିଛି । କାହାରିକୁ ସେ ହତାଶ କରି ନାହିଁ କିମ୍ବା ହତୋତ୍ସାହ କରି ନାହିଁ, ବରଂ ପ୍ରତ୍ୟେକଙ୍କୁ ଉତ୍ସାହ ଦେଇଛି, ଅତୀତ ସହିତ ପରିଚିତ କରାଇଛି, ନୂତନତ୍ୱର ସ୍ୱାଦ ଚଖାଇଛି ଏବଂ ଭବିଷ୍ୟତ୍‌ପାଇଁ ସମ୍ଭାବନାର ସ୍ତମ୍ଭ ଟୋଳିଛି ।

ଓଡ଼ିଶା ପରି ଏକ ଦରିଦ୍ର ରାଜ୍ୟରେ ବହୁ ଅନୁଷ୍ଠାନ ଖୁବ୍ ଜାକଜମକତାର ସହିତ ଗଢ଼ିଉଠେ, ଅଥଚ ଖୁବ୍ କମ ସମୟ ବ୍ୟବଧାନରେ ଭାଙ୍ଗିରୁଜି ଧୂଳିସାତ୍ ହୋଇଯାଏ । କେହି କେହି ତା'ର ପ୍ରଥମ ଜନ୍ମଦିନ ମଧ ପାଳନ କରିପାରନ୍ତି ନାହିଁ । ଏହି ପରିପ୍ରେକ୍ଷୀରେ ବିଜ୍ଞାନ ପ୍ରଚାର ସମିତି ଏକ ବ୍ୟତିକ୍ରମ । ଯେତେ ବାଧା-ବିଘ୍ନ ଆସିଲେ ମଧ ତା'ର ଭିତ୍ତିଭୂମି ଦୋହଲି ଯାଇନି କିମ୍ବା ମେରୁଦଣ୍ଡ ଦୁର୍ବଳ ହୋଇନି । ଷାଠିଏ ବର୍ଷ ଧରି ସେ ଆଜି ଦୃଢ଼ତାର ସହିତ ବଞ୍ଚି ରହିଛି ସ୍ୱକୀୟ ପରିଚୟ ବହନ କରି । ନିଜପାଇଁ ଖଣ୍ଡିଏ ବାସଗୃହ ନାହିଁ, ନିଜର ଦୈନନ୍ଦିନର ଖର୍ଚ୍ଚପାଇଁ ଅର୍ଥପ୍ରାପ୍ତିର କୌଣସି ସ୍ଥାୟୀ ପନ୍ଥା ନାହିଁ, କୌଣସି ସରକାରୀ ଅନୁଦାନପାଇଁ ପ୍ରତୀକ୍ଷା ମଧ ନାହିଁ । ତଥାପି ସେ ଉଠି ଚାଲିଛି ପାହାଚ ପରେ ପାହାଚ । ଷାଠିଏଟି ପାହାଚର ଶୀର୍ଷ ଦେଶରେ ଉପନୀତ ହୋଇ ସେ ଆଜି ଯେତେବେଳେ ତଳକୁ ନିରୀକ୍ଷଣ କରୁଛି, ତାକୁ କେବଳ କଟକ ଦୃଶ୍ୟମାନ ହେଉ ନାହିଁ, ଦୃଶ୍ୟମାନ ହେଉଛି ସାରା ଓଡ଼ିଶା, ସାରା ଭାରତ ଆଉ ସାରା ପୃଥିବୀ । ସବୁ ବୈଜ୍ଞାନିକ ତା'ର ପ୍ରିୟ – ସେ ଗବେଷକ ହୁଅନ୍ତୁ, ବିଜ୍ଞାନ ଲେଖକ ହୁଅନ୍ତୁ, ଅଧ୍ୟାପକ ହୁଅନ୍ତୁ, ଚିକିତ୍ସକ ହୁଅନ୍ତୁ, ଯନ୍ତ୍ରୀ ହୁଅନ୍ତୁ, ଶିକ୍ଷକ ହୁଅନ୍ତୁ, ଛାତ୍ର ହୁଅନ୍ତୁ ବା ବୁଦ୍ଧିଜୀବୀ ହୁଅନ୍ତୁ । ଯେ ଥରେ ତା'ର ମାୟାରେ ପଡ଼ିଛନ୍ତି, ଏକ ଅହେତୁକ ଆବେଗରେ ବାନ୍ଧି ହୋଇଯାଇଛନ୍ତି । ସତରେ କି କୁହୁକବୋଳା ସେଇ ଆକର୍ଷଣ ! ସମସ୍ତଙ୍କୁ କେବଳ ଯେ ସେ ନିଜ ଭିତରେ ସୀମିତ କରି ରଖିଛି, ତା' ନୁହେଁ, ସମାଜରେ ପ୍ରତ୍ୟେକଙ୍କୁ ସ୍ୱକୀୟ ସ୍ୱୀକୃତି ଦେଇଛି, ନୂତନରୁ ପ୍ରବୀଣ କରାଇଛି, ରାଜ୍ୟ ଓ ରାଜ୍ୟ ବାହାରେ ସେମାନଙ୍କୁ ପରିଚିତ କରାଇଛି । କେତେକଙ୍କୁ ନିଜର ସ୍ମାରକୀ ମଧ ପ୍ରଦାନ କରିଛି । ଗୋଟିଏ ଅନୁଷ୍ଠାନପାଇଁ ଏହାଠାରୁ ବଳି ଗୌରବର ବିଷୟ ଆଉ କ'ଣ ବା ହୋଇପାରେ ?

ବିଜ୍ଞାନ ପ୍ରଚାର ସମିତି ଆମ ସମସ୍ତଙ୍କର, ଆମେ ସମସ୍ତେ ତା'ର । ତା'ର ଗୌରବରେ ଆମେ ଗୌରବାନ୍ୱିତ; ଆମର ସାର୍ଥକତାରେ ସେ ଗର୍ବିତ । ତେଣୁ ତା'ର ଏହି ଷାଠିଏ ବର୍ଷ ପୂର୍ତ୍ତି ଉତ୍ସବ ପାଳନ ଅବସରରେ ତା'ର ଉତ୍ତରୋତ୍ତର ଉନ୍ନତି ନିମିତ୍ତ ସମୂହ ଚେଷ୍ଟା କରିବାପାଇଁ ଆମେ ସମସ୍ତେ କାୟମନୋବାକ୍ୟରେ ଶପଥ ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ବିଜ୍ଞାନ ପ୍ରଚାର ସମିତିର କାୟା ଆହୁରି ପ୍ରସାରିତ ହେଉ, ତା'ର ଖ୍ୟାତି ସାରା ରାଜ୍ୟ, ସାରା ରାଷ୍ଟ୍ର ତଥା ସାରା ପୃଥିବୀରେ ଗୁଞ୍ଜରିତ ହେଉ, ହୀରକ ଜୟନ୍ତୀ ପାଳନ କରିବା ପରେ ସେ ତା'ର ପ୍ଲାଟିନମ୍ ଜୟନ୍ତୀ, ଶତବାର୍ଷିକୀ – ଏମିତି ଜୟନ୍ତୀ ପରେ ଜୟନ୍ତୀ ପାଳନ କରି ଚାଲୁ, ଆଗାମୀ ବିଜ୍ଞାନୀ ପିଢ଼ିପାଇଁ ଏକ ଆଦର୍ଶ ରୂପରେ ଦଣ୍ଡାୟମାନ ହୋଇ ସଫଳ ଦିଗ୍‌ଦର୍ଶନ ଦେଉ ଏବଂ ଅନ୍ୟାନ୍ୟ ଶିଶୁବିଜ୍ଞାନ ଅନୁଷ୍ଠାନଗୁଡ଼ିକ ପ୍ରତି ଦୃଷ୍ଟାନ୍ତର ସ୍ୱାକ୍ଷର ବହନ କରୁ – ଏହାହିଁ ହେଉ ଆମ ସମସ୍ତଙ୍କପାଇଁ ହୀରକ ଜୟନ୍ତୀର ଅନୁଚିନ୍ତା । ତା'ହେଲେ ହୁଏତ ଆମେ ବିଜ୍ଞାନ ପ୍ରଚାର ସମିତି ପ୍ରତି ଉଚିତ ସମ୍ମାନ ପ୍ରଦର୍ଶନ କରିପାରିବା ।

## ଆମେ ମର୍ମାହତ

ସମିତିର ପ୍ରାଣପ୍ରତିଷ୍ଠାତା ନଅ ଜଣ ସଦସ୍ୟଙ୍କ ମଧ୍ୟରୁ ଆଜି ମାତ୍ର ତିନି ଜଣ ଜୀବିତ । ଆଉ ସମସ୍ତେ ଇତି ମଧ୍ୟରେ ଇହଲୀଳା ସମ୍ବରଣ କରିସାରିଲେଣି । ଏହି ଷାଠିଏ ବର୍ଷ ଭିତରେ ସମିତି ପ୍ରାୟ ୪୦୦ରୁ ଅଧିକ ସଦସ୍ୟଙ୍କୁ ତାଲିକାଭୁକ୍ତ କରିସାରିଛି । ମାତ୍ର ସେମାନଙ୍କ ଭିତରୁ କେତେକ ଆଜି ଆଉ ଆମ ଗହଣରେ ନାହାନ୍ତି । ସମିତିକୁ ଶୋକାକୁଳ କରି ସେମାନେ ପରଲୋକପ୍ରାପ୍ତ ହୋଇଗଲେଣି । ସେହି ସମସ୍ତ ଗୁଣୀ, ଜ୍ଞାନୀ, ବୁଦ୍ଧିଜୀବୀମାନଙ୍କ ଅବର୍ତ୍ତମାନରେ ଆମେ ଖୁବ୍ ମର୍ମାହତ । ଯଦି ସେମାନେ ଆଜି ଜୀବିତ ଥାଆନ୍ତେ, ସମିତିର ଏହି ହୀରକ ଜୟନ୍ତୀ ସମାରୋହପାଇଁ କେତେ ଯେ ଆନନ୍ଦିତ ଆଉ ଗର୍ବିତ ହୋଇଥାନ୍ତେ, ତାହା ହୁଏତ ଭାଷାରେ ପ୍ରକାଶ କରି ହେବ ନାହିଁ । ସେମାନଙ୍କ ସ୍ୱର୍ଗତ ଆତ୍ମାର ସଦ୍‌ଗତି ହେଉ, ଏହାହିଁ ଆଜି ଆମର କାମନା ।

## କୃତଜ୍ଞତା

ଏହି ସ୍ମାରକୀର ପ୍ରକାଶନପାଇଁ ଯେଉଁମାନେ ଅକୁଣ୍ଠ ଚିତ୍ତରେ ଆବଶ୍ୟକ ସାହାଯ୍ୟ, ସହଯୋଗ, ପରାମର୍ଶ ଓ ଉପଦେଶ ଯୋଗାଇ ଦେଇଛନ୍ତି, ସେମାନେ ହେଲେ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର, ପ୍ରଫେସର କୁଳମଣି ସାମଲ, ପ୍ରଫେସର ବାସୁଦେବ କର, ପ୍ରଫେସର ନିମାଇଁ ଚରଣ ପଣ୍ଡା, ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ, ଶ୍ରୀ ନିରଞ୍ଜନ ପାତ୍ର, ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ, ଡକ୍ଟର ସୁବାସିନୀ ଲେଙ୍କା, ଡକ୍ଟର ନାରାୟଣ ଚନ୍ଦ୍ର ପାଳ ଓ ପ୍ରଫେସର ବୈଷ୍ଣବ ଚରଣ ସିଂହ । ଏହାର ପ୍ରକାଶନ ଅବସରରେ ସେ ସମସ୍ତଙ୍କୁ ଆମେ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ । ଯେଉଁ ସହୃଦୟ ବ୍ୟକ୍ତି ଓ ଅନୁଷ୍ଠାନ ଏହି ସ୍ମାରକୀପାଇଁ ଆମକୁ ଅନୁଦାନ ତଥା ବିଜ୍ଞାପନ ମାଧ୍ୟମରେ ଆର୍ଥିକ ସହାୟତା ପ୍ରଦାନ କରିଛନ୍ତି, ସେମାନଙ୍କ ନିକଟରେ ମଧ୍ୟ ଆମେ କୃତଜ୍ଞ ।

ଶେଷରେ ଏହାର ପ୍ରକାଶନର ସମସ୍ତ ଦାୟିତ୍ୱ ବହନ କରି ଏହାକୁ ଲୋକଲୋଚନକୁ ଆଣିପାରିଥିବାରୁ ବିଦ୍ୟାପୁରୀର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ରଙ୍କ ନିକଟରେ ଆମେ କୃତଜ୍ଞ ।

ସଚ୍ଚିଦାନନ୍ଦ ଶତପଥୀ
ସ୍ମାରକୀ ସଂପାଦକ



# ହୀରକ ଜୟନ୍ତୀ ସମାରୋହ (୨୦୦୯) ପାଳନ ଉପଲକ୍ଷେ
# ଗଠିତ ବିଭିନ୍ନ କମିଟିର ଅଧ୍ୟକ୍ଷ, ଆବାହକ ଓ ସଭ୍ୟବୃନ୍ଦ

**୧. ହୀରକ ଜୟନ୍ତୀ ସମାରୋହ କମିଟି**

ଅଧ୍ୟକ୍ଷ – ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର
ସଂଗଠନ ସଂପାଦକ – ପ୍ରଫେସର ପ୍ରଭାତ କୁମାର ମିଶ୍ର
କୋଷାଧ୍ୟକ୍ଷ – ପ୍ରଫେସର ବୈଷ୍ଣବଚରଣ ସିଂହ
ଆବାହକ – ଇଂ. ଧୀରେନ୍ଦ୍ର କୁମାର ବିଶ୍ୱାଳ
ସଭ୍ୟ –
୧. ପ୍ରଫେସର ନିମାଇଁ ଚରଣ ପଣ୍ଡା
୨. ପ୍ରଫେସର କୁଳମଣି ସାମଲ
୩. ପ୍ରଫେସର ପଦ୍ମଲୋଚନ ନାୟକ
୪. ଡ. ସୁବାସିନୀ ଲେଙ୍କା
୫. ଡାଃ. ସଚ୍ଚିଦାନନ୍ଦ ଶତପଥୀ

**୨. ଅଭ୍ୟର୍ଥନା କମିଟି**

ଅଧ୍ୟକ୍ଷ – କୁଳପତି, ରେଭେନ୍‌ସା ବିଶ୍ୱବିଦ୍ୟାଳୟ
ଉପାଧ୍ୟକ୍ଷ – ଡ. ବିଜୟ କୁମାର ମିଶ୍ର
ଆବାହକ – ଡ. ନାରାୟଣ ଚନ୍ଦ୍ର ପାଳ
ପଞ୍ଜୀକରଣ –
୧. ପ୍ରଫେସର ବୈଷ୍ଣବଚରଣ ସିଂହ
୨. ଡ. ବରଦା ଚରଣ ମହାନ୍ତି
ସଭ୍ୟ –
୧. ଡ. ଯୋଗମାୟା ପଟ୍ଟନାୟକ
୨. ଡ. ମୃତ୍ୟୁଞ୍ଜୟ ପ୍ରଧାନ
୩. ଡ. ବିଜୟ କୁମାର ପଟ୍ଟନାୟକ
୪. ଡ.ଗୁରୁପ୍ରସାଦ ମହାନ୍ତି
୫. ଡ. ବିଜୟ କୁମାର ପାଣିଗ୍ରାହୀ

**୩. ଅର୍ଥ କମିଟି**

ଅଧ୍ୟକ୍ଷ – ପ୍ରଫେସର ପଦ୍ମଲୋଚନ ନାୟକ
ଆବାହକ – ଡ. ପ୍ରମୋଦ କୁମାର ମହାପାତ୍ର
ସଭ୍ୟ –
୧. ପ୍ରଫେସର ବୈଷ୍ଣବ ଚରଣ ସିଂହ
୨. ଡ. ବରଦାଚରଣ ମହାନ୍ତି
୩. ଡ. ସୁରେନ୍ଦ୍ରନାଥ ମହାନ୍ତି
୪. ଡାଃ. ସନାତନ ରଥ
୫. ଡାଃ. ନିମାଇଁ ଚରଣ ପଣ୍ଡା
୬. ପ୍ରଫେସର ଭାରତୀ ବେହେରା
୭. ପ୍ରଫେସର ଲକ୍ଷ୍ମୀକାନ୍ତ ସାହୁ
୮. ପ୍ରଫେସର ନିରଞ୍ଜନ ତ୍ରିପାଠୀ
୯. ଡ. ବିଜୟ କୁମାର ପଟ୍ଟନାୟକ
୧୦. ଡ. ନିଗମାନନ୍ଦ ମଲ୍ଲିକ
୧୧. ଡ. କାଞ୍ଚନ ଆଚାର୍ଯ୍ୟ
୧୨. ଡ. ଗୋପାଳ ଚନ୍ଦ୍ର କର
୧୩. ଡ. ଚିତ୍ତରଞ୍ଜନ ମିଶ୍ର
୧୪. ଡ. ଦୀପ୍ତି ପଟ୍ଟନାୟକ
୧୫. ଶ୍ରୀ ସୁଜିତାଭ ଶତପଥୀ

**୪. ପ୍ରକାଶନ କମିଟି**

ଅଧ୍ୟକ୍ଷ – ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର
ଆବାହକ – ଡାଃ. ନିତ୍ୟାନନ୍ଦ ସ୍ୱାଇଁ
ସଭ୍ୟ –
୧. ପ୍ରଫେସର କୁଳମଣି ସାମଲ
୨. ଡ. ସଚ୍ଚିଦାନନ୍ଦ ଶତପଥୀ
୩. ଡ. ପ୍ରିୟତମା ଦେଓ
୪. ଡ. ବାସୁଦେବ କର
୫. ଡ. ପ୍ରମୋଦ କୁମାର ମହାପାତ୍ର

**୫. ସୋଭେନିର କମିଟି**

ଅଧ୍ୟକ୍ଷ – ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର
ଆବାହକ – ଡାଃ. ସଚ୍ଚିଦାନନ୍ଦ ଶତପଥୀ
ସଭ୍ୟ –
୧. ପ୍ରଫେସର କୁଳମଣି ସାମଲ
୨. ଡ. ନିତ୍ୟାନନ୍ଦ ସ୍ୱାଇଁ
୩. ଶ୍ରୀ ନିରଞ୍ଜନ ପାତ୍ର
୪. ଶ୍ରୀ ପୀତାମ୍ବର ମିଶ୍ର
୫. ଡ. ପ୍ରମୋଦ କୁମାର ମହାପାତ୍ର
୬. ଶ୍ରୀ ବିଷ୍ଣୁଚରଣ ଜେନା
୭. ଡ. ପ୍ରିୟତମା ଦେଓ
୮. ଡାଃ. ସର୍ବେଶ୍ୱର ସ୍ୱାଇଁ

**୬. ପ୍ରତିଯୋଗିତା, ମାନପତ୍ର ଓ ପୁରସ୍କାର କମିଟି**

ଅଧ୍ୟକ୍ଷ – ପ୍ରଫେସର ସୁଦର୍ଶନ ପଟ୍ଟନାୟକ

ଆବାହକ – ୧. ଇଂ. ଧୀରେନ୍ଦ୍ର କୁମାର ବିଶ୍ୱାଳ

୨. ଡ. ନାରାୟଣ ଚନ୍ଦ୍ର ପାଳ

ସଭ୍ୟ – ୧. ଶ୍ରୀ ବିଷ୍ଣୁଚରଣ ଜେନା

୨. ଶ୍ରୀ କଲ୍ୟାଣ ମହାପାତ୍ର

୩. ଶ୍ରୀ ମହେନ୍ଦ୍ର କୁମାର କାୟସ୍ଥ

୪. ଡ. ବିଜୟ କୁମାର ମିଶ୍ର

୫. ଡ. ସୁବାସିନୀ ଲେଙ୍କା

**୭. ସମ୍ମାନ କମିଟି**

ଅଧ୍ୟକ୍ଷ – ପ୍ରଫେସର ପଦ୍ମଲୋଚନ ନାୟକ

ଆବାହକ – ଡ. ସୁବାସିନୀ ଲେଙ୍କା

ସଭ୍ୟ – ୧. ଡ. ବିଜୟ କୁମାର ମିଶ୍ର

୨. ଡ. ନାରାୟଣ ଚନ୍ଦ୍ର ପାଳ

୩. ଡା. ରଘୁନାଥ ବିଶ୍ୱାଳ

୪. ଶ୍ରୀ ନିରଞ୍ଜନ ପାତ୍ର

୫. ଡ. ବିଜୟ କୁମାର ପଟ୍ଟନାୟକ

୬. ଡ. ଚିତ୍ତରଞ୍ଜନ ମିଶ୍ର

୭. ଡ. ନରୋତ୍ତମ ସାହୁ

**୮. ପ୍ରଚାର ଓ ପ୍ରସାର କମିଟି**

ଅଧ୍ୟକ୍ଷ – ଡ. ପ୍ରମୋଦ କୁମାର ମହାପାତ୍ର

ଆବାହକ – ଶ୍ରୀ ବିଷ୍ଣୁଚରଣ ଜେନା

ସଭ୍ୟ – ୧. ଶ୍ରୀ କଲ୍ୟାଣ ମହାପାତ୍ର

୨. ଶ୍ରୀମତୀ ଅନସୂୟା ମିଶ୍ର

୩. ଡ. ପଦ୍ମନାଭ ବେହେରା

୪. ଶ୍ରୀ ନିରଞ୍ଜନ ପାତ୍ର

**୯. କ୍ୟାଟରିଙ୍ଗ କମିଟି**

ସଭ୍ୟ – ୧. ଡ. ବିଜୟ କୁମାର ମିଶ୍ର

୨. ଇଂ. ଧୀରେନ୍ଦ୍ର କୁମାର ବିଶ୍ୱାଳ

୩. ଡ. ନାରାୟଣ ଚନ୍ଦ୍ର ପାଳ

## ବିଜ୍ଞାନ ପ୍ରଚାର ସମିତିର ସାମ୍ପ୍ରତିକ କର୍ମକର୍ତ୍ତା – ୨୦୦୯

ସଭାପତି – ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର

ଉପ-ସଭାପତି – ପ୍ରଫେସର କୁଳମଣି ସାମଲ

ସଂପାଦକ – ଇଂ. ଧୀରେନ୍ଦ୍ର କୁମାର ବିଶ୍ୱାଳ

ଯୁଗ୍ମ ସଂପାଦକ – ଡ. ନାରାୟଣ ଚନ୍ଦ୍ର ପାଳ

କୋଷାଧ୍ୟକ୍ଷ – ପ୍ରଫେସର ବୈଷ୍ଣବ ଚରଣ ସିଂହ

ପ୍ରକାଶନ ସଂପାଦକ– ଡା. ନିତ୍ୟାନନ୍ଦ ସ୍ୱାଇଁ

କାର୍ଯ୍ୟକାରୀ କମିଟି ସଭ୍ୟ –

୧. ପ୍ରଫେସର ନିମାଇଁ ଚରଣ ପଣ୍ଡା

୨. ପ୍ରଫେସର ପ୍ରଭାତ କୁମାର ମିଶ୍ର

୩. ପ୍ରଫେସର ପଦ୍ମଲୋଚନ ନାୟକ

୪. ଡ. ସୁବାସିନୀ ଲେଙ୍କା

୫. ଡା. ସଚ୍ଚିଦାନନ୍ଦ ଶତପଥୀ

## ବିଜ୍ଞାନ ପ୍ରଚାର ସମିତିର ଅୟମାରମ୍ଭ

### ସର୍ବପ୍ରଥମ ସାଧାରଣ ଅଧିବେଶନ

ଜନ୍ମ – ୧୯୪୯ ମସିହା ଅଗଷ୍ଟ ମାସ ୭ ତାରିଖ ରବିବାର ଅପରାହ୍ନ ୪ ଘଟିକା

ସ୍ଥାନ – ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ ପରିସରସ୍ଥିତ ସରକାରୀ ବାସଭବନ ।

ସଭାପତି – ଡ. ସଦାଶିବ ମିଶ୍ର

ପ୍ରଥମ ନିର୍ବାଚିତ ସଂପାଦକ –

୧. ଡକ୍ଟର ରାଧାନାଥ ରଥ

୨. ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ସମିତିରେ ପଠିତ ପ୍ରଥମ ପ୍ରବନ୍ଧ –

ଦ୍ୱିତୀୟ ଅଧିବେଶନ – ତା ୨୧.୮.୧୯୪୯

ପ୍ରବନ୍ଧର ନାମ – ପୁଅ ନା ଝିଅ

ପ୍ରବନ୍ଧ ପାଠକ – ସ୍ୱର୍ଗୀୟ ଡ. ଶ୍ୟାମାନନ୍ଦ ପଟ୍ଟନାୟକ, ଏମ୍.ଏସ୍‌ସି., ପିଏଚ୍.ଡି. (କର୍ଣ୍ଣେଲ୍)

# ବିଜ୍ଞାନ ପ୍ରଚାର ସମିତିର ଷାଠିଏ ବର୍ଷ

**ଡ. କୁଳମଣି ସାମଲ**

**ସମିତି ଗଠନ** – ବିଜ୍ଞାନ ପ୍ରଚାର ସମିତି ଗଠନର ପୃଷ୍ଠଭୂମିରେ ଥିଲା ଜାତୀୟତାବାଦ, ଭାଷା ପ୍ରୀତି ଓ ବିଜ୍ଞାନ ପ୍ରେମ । ଏହି ଦିବ୍ୟଗୁଣର ଅଧିକାରୀ ନ'ଜଣ ଦୂରଦର୍ଶୀ ବ୍ୟକ୍ତି ଓଡ଼ିଶାରେ ବିଜ୍ଞାନ ପ୍ରଚାର ସମିତି ଗଠନର ପ୍ରଥମ ପରିକଳ୍ପନା କଲେ । ପରେ ସମଭାବାପନ୍ନ ବ୍ୟକ୍ତିଙ୍କ ସହଯୋଗରେ ସମିତିର ପୃଷ୍ଠପୋଷକ ଓ ଆଜୀବନ ସଭ୍ୟ ସଂଖ୍ୟା ଚାରି ଶହରୁ ଉର୍ଦ୍ଧ୍ୱକୁ ଉଠିପାରିଲା ।

ପ୍ରଥମ ନ'ଜଣ ପ୍ରତିଷ୍ଠାତା ସଭ୍ୟ ହେଲେ – ✓ ଡା. ଗୋପାଳ ଚନ୍ଦ୍ର ପଟ୍ଟନାୟକ, ଡ. ଗୋକୁଳାନନ୍ଦ ମହାପାତ୍ର, ଡ. ରାଧାନାଥ ରଥ, ଡ. ସୁକୁମାର ଆଦିତ୍ୟ, ✓ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର, ✓ ଡ. ରାଇକୃଷ୍ଣ ମହାନ୍ତି, ✓ ଡ. ସଦାଶିବ ମିଶ୍ର, ✓ ଡ. ଶ୍ୟାମାନନ୍ଦ ପଟ୍ଟନାୟକ ଓ ✓ ଅଧ୍ୟାପକ କୃଷ୍ଣଚରଣ ଦାସ । ୧୯୪୯ ମସିହାରେ ଗୋକୁଳାନନ୍ଦବାବୁ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନ ବିଜ୍ଞାନରେ ଏମ୍.ଏସ୍‌ସି. ପାସ୍ କରି ରେଭେନ୍ସା କଲେଜରେ ଲେକ୍‌ଚରର ଭାବେ ଯୋଗ ଦେଲେ । ସେହି ସମୟରେ କଲିକତାରେ ବଙ୍ଗୀୟ ବିଜ୍ଞାନ ପରିଷଦ ଗଠିତ ହୋଇଥାଏ । ବଙ୍ଗଳା ଭାଷାରେ ବିଜ୍ଞାନ ଲେଖା ପ୍ରକାଶ ପାଉଥାଏ । ଗୋକୁଳାନନ୍ଦ ମହାପାତ୍ରଙ୍କ ମନରେ ଥାଏ ଓଡ଼ିଶାରେ ଏହିଭଳି ଏକ ସମିତି ଗଢ଼ିବାକୁ । ଆଗରୁ ଥରେ ଭଦ୍ରକରେ ତାଙ୍କ ସ୍ତ୍ରୀଙ୍କ ଚିକିତ୍ସା ସଂପର୍କରେ ସେ ଡା. ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କୁ ପରାମର୍ଶ କରିଥିଲେ । ପୂର୍ବ ପରିଚୟର ସୁଯୋଗରେ ସେ ଏକଥା ତାଙ୍କୁ କଟକରେ ଜଣାଇଲେ । ଡା. ପଟ୍ଟନାୟକ ଜଣେ ଉତ୍ସାହୀ ବ୍ୟକ୍ତି । ମଧ୍ୟଇଂରାଜୀ ସ୍ତରରେ ସ୍ୱାସ୍ଥ୍ୟରକ୍ଷା ପଢ଼ିବାପାଇଁ 'ସ୍ୱାସ୍ଥ୍ୟ ସାଥୀ' ନାମକ ଖଣ୍ଡିଏ ଓଡ଼ିଆ ବହି ଲେଖିଥାନ୍ତି । ଓଡ଼ିଆରେ ବିଜ୍ଞାନ ଲେଖିବା କଥା ତାଙ୍କ ମନକୁ ପାଇଲା । ସେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ସାଥୀ ଅଧ୍ୟାପକ ଡା. ମହେନ୍ଦ୍ର ଚନ୍ଦ୍ର ମିଶ୍ର ଓ ଡା. ରାଇକୃଷ୍ଣ ମହାନ୍ତିଙ୍କୁ ଜଣାଇଲେ ।

ଏଣେ ରେଭେନ୍ସା କଲେଜରେ ନିକଟରେ ଲଣ୍ଡନରୁ ଫେରିଥିବା ଅଧ୍ୟାପକ ଡ. ରାଧାନାଥ ରଥ ମନୋବିଜ୍ଞାନ ବିଭାଗ ଖୋଲିବାକୁ ତତ୍ପର ଥା'ନ୍ତି । ସେ ଜଣେ ପ୍ରଗତିବାଦୀ ଲୋକ । ଶ୍ରୀ ମହାପାତ୍ରଙ୍କ ଚିନ୍ତାଧାରାକୁ ସମର୍ଥନ କରି ଦ୍ୱିଗୁଣ ଉତ୍ସାହ ଦେଖାଇଲେ । ଏକଦା ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ଥିବା ଜାତୀୟତାବାଦୀ ଅର୍ଥନୀତି ଅଧ୍ୟାପକ ଡ. ସଦାଶିବ ମିଶ୍ର ଏ ପ୍ରସ୍ତାବରେ ସହଯୋଗ କରିବାକୁ ସମ୍ମତି ଜଣାଇଲେ । ସୁକୁମାର ଆଦିତ୍ୟ, ଶ୍ୟାମାନନ୍ଦ ପଟ୍ଟନାୟକ ଓ କୃଷ୍ଣ ଚନ୍ଦ୍ର ଦାସଙ୍କ ଭଳି ଯୁବ ଅଧ୍ୟାପକମାନେ ଏ ପ୍ରସ୍ତାବକୁ ବିନା ଦ୍ୱିଧାରେ ସମର୍ଥନ କଲେ ।

ସେହି ବର୍ଷ ୧୯୪୯ ମସିହା, ଅଗଷ୍ଟ ୭ ତାରିଖରେ ସମିତିର ପ୍ରଥମ ଅଧିବେଶନ କଟକ ମେଡ଼ିକାଲ ପରିସରରେ ଥିବା ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ସରକାରୀ ବାସ ଭବନରେ ଅନୁଷ୍ଠିତ ହେଲା । ସଭାପତିତ୍ୱ କଲେ ଡ. ସଦାଶିବ ମିଶ୍ର । ପ୍ରଥମ ଯୁଗ୍ମ ସମ୍ପାଦକ ଦ୍ୱୟ ହେଲେ ଡ. ରାଧାନାଥ ରଥ ଓ ଡ. ଗୋକୁଳାନନ୍ଦ ମହାପାତ୍ର । ସ୍ଥିର ହେଲା, ବର୍ଷକ ପାଇଁ ବିଜ୍ଞାନ ପ୍ରଚାର ସମିତିର ଯୁଗ୍ମ ସମ୍ପାଦକ ନିର୍ବାଚିତ ହେବେ ଓ ଅଧିବେଶନରେ ଉପସ୍ଥିତ ସଭ୍ୟଙ୍କ ଭିତରୁ ଜଣେ ନିର୍ବାଚିତ ହୋଇ ସଭାପତିତ୍ୱ କରିବେ । ପ୍ରତି ୧୫ ଦିନରେ ଥରେ ଏକ ରବିବାରରେ ସମିତିର ଅଧିବେଶନ କରାଯାଇ ସେଥିରେ ଓଡ଼ିଆରେ ଲିଖିତ ପ୍ରବନ୍ଧମାନ ପଠିତ ଓ ଆଲୋଚିତ ହେବ ।

**ଘୋଷିତ ଆଭିମୁଖ୍ୟ** – ସଙ୍ଗେ ସଙ୍ଗେ ସମିତିର ସମ୍ବିଧାନ ରଚନା ନ କରି ଅଳ୍ପ କେତୋଟି ପ୍ରମୁଖ ବିଷୟ ସମିତିର ବିବରଣୀ ଖାତାରେ ଲେଖା ହୋଇରହିଲା ।

୧. ଅନୁଷ୍ଠାନଟିର ଲକ୍ଷ୍ୟ ହେଲା – ସରଳ ଓଡ଼ିଆ ଭାଷା ଓ ସାବଲୀଳ ଶୈଳୀରେ ଜନସାଧାରଣ ବିଶେଷତଃ ମାଧ୍ୟମିକ ସ୍ତରର ଛାତ୍ରଙ୍କ ବୋଧଗମ୍ୟ ହେଲାଭଳି ଲେଖା ପ୍ରସ୍ତୁତ କରାଯିବ । ଲେଖକ ବା ସମିତି ସେହି ଲେଖାକୁ ସମ୍ବାଦପତ୍ର ଓ ପତ୍ରିକା ଜରିଆରେ ପ୍ରକାଶ କରିବାକୁ ଚେଷ୍ଟା କରିବେ ।

୨. ସମିତିର ଅଧିବେଶନଗୁଡ଼ିକ ଯଥାସମ୍ଭବ ସଭ୍ୟମାନଙ୍କ ଘରେ ବସାଇବାର ଆୟୋଜନ କଲେ ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ଘନିଷ୍ଠତା ବୃଦ୍ଧି ପାଇବ ।

୩. ସମିତିକୁ ବେସରକାରୀ ସ୍ତରରେ ଚଳାଇ ରଖିଲେ ଏହାର ଲକ୍ଷ୍ୟ ପୂରଣରେ ସ୍ୱାଧୀନତା ରହିବ ।

**ସଭ୍ୟ ସଂଖ୍ୟା ବୃଦ୍ଧି** – ଧୀରେ ଧୀରେ ସଭ୍ୟ ସଂଖ୍ୟା ବୃଦ୍ଧି ପାଉଲେ ମଧ୍ୟ ଅନେକ ଅଧ୍ୟାପକ ସମିତିର ଭବିଷ୍ୟତ

ସମ୍ବନ୍ଧରେ ସନ୍ଦିହାନ ହୋଇ ପରିହାସ କଲେ । କାରଣ ସେମାନଙ୍କର ଧାରଣା ଥିଲା ବିଜ୍ଞାନର ଓଡ଼ିଆ ଲେଖା ପାରିଭାଷିକ ଜଟିଳତାପାଇଁ ଅଧିକ ଅବୋଧ ଓ ଅପାଠ୍ୟ ହୋଇପଡ଼ିବ । ସୁଖର କଥା ସମିତିର ସାଧୁ ଉଦ୍ୟମକୁ ସମର୍ଥନ ଜଣାଇଲେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ ଡ. ବଳଭଦ୍ର ପ୍ରସାଦ । ସେ ଏକ ନିର୍ଦ୍ଦେଶନାମା ଦେଲେ ଯେ ପ୍ରତ୍ୟେକ ଅଧ୍ୟାପକ ଓଡ଼ିଶାର ବିଜ୍ଞାନ ପ୍ରଚାର ସମିତି ଭଳି କୌଣସି ବିଦ୍ୱାନ୍ ପରିଷଦର ସଭ୍ୟ ହୋଇଥିଲେ ତାଙ୍କ ଚରିତ୍ର ପଞ୍ଜିକା ପୂରଣପାଇଁ ପଠାଉଥିବା ବିବରଣୀରେ ତାହା ଉଲ୍ଲେଖ କରିବେ । ଫଳରେ ଅନେକ ବିଜ୍ଞାନ ଅଧ୍ୟାପକ ସମିତିର ସଭ୍ୟ ହୋଇ ସକ୍ରିୟ ଭୂମିକା ଗ୍ରହଣ କଲେ । ସମିତି ବାର୍ଷିକ ଅଧିବେଶନ ଯଥାରୀତି ପାଳନ କରି ଉପାଦେୟ ବିଷୟ ଆଧାରିତ ସମ୍ମାନମାନ ଆୟୋଜନ କଲା । ଅଧିବେଶନକୁ ଓଡ଼ିଶାର ବିଶିଷ୍ଟ ବୈଜ୍ଞାନିକ, ଚିକିତ୍ସକ ଓ ଇଞ୍ଜିନିୟର ମୁଖ୍ୟ ଅତିଥି ହୋଇ ନିମନ୍ତ୍ରିତ ହେଲେ ।

ଏପରିକି ଯେଉଁମାନେ ବୈଜ୍ଞାନିକ ନୁହନ୍ତି ଅଥଚ ଅନ୍ୟାନ୍ୟ କ୍ଷେତ୍ରରେ ଖ୍ୟାତି ଅର୍ଜନ କରି ସ୍ୱନାମଧନ୍ୟ ହୋଇଥିଲେ ସେମାନେ ମଧ୍ୟ ଆର୍ଥିକ ସାହାଯ୍ୟ କରି ସମିତିର ପୃଷ୍ଠପୋଷକ ହେଲେ । ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଉଛନ୍ତି, ୰ ଅଧ୍ୟାପକ ଗିରିଜାଶଙ୍କର ରାୟ, ୰ ନୀଳମଣି ସେନାପତି (ଆଇ.ସି.ଏସ୍) ୰ ପଦ୍ମଶ୍ରୀ ବିନୋଦ କାନୁନଗୋ, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ଡ. ହରେକୃଷ୍ଣ ମହତାବ ଓ ଓଡ଼ିଶାର ପୂର୍ବତନ ଚିଫ୍ ସେକ୍ରେଟେରୀ ସହଦେବ ସାହୁ ।

**ପାଠ୍ୟ ପୁସ୍ତକ ରଚନା** – ୧୯୪୪ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ମାଟ୍ରିକ୍ ପରୀକ୍ଷା ପରିଚାଳନା କଲା । ୧୯୪୮-୪୯ ଶିକ୍ଷା ବର୍ଷରେ ପ୍ରଥମ କରି ଅଷ୍ଟମ ଶ୍ରେଣୀରୁ ବିଜ୍ଞାନ ପଢ଼ା ହେବାରୁ ଏକ ସଂକଟମୟ ପରିସ୍ଥିତି ଆରମ୍ଭ ହୋଇଗଲା । ଓଡ଼ିଶାରେ ବିଜ୍ଞାନ ଶିକ୍ଷକ ନାହାନ୍ତି କି ଓଡ଼ିଆରେ ବିଜ୍ଞାନ ପାଠ୍ୟପୁସ୍ତକ ନାହିଁ । ଅନ୍ୟ ଶିକ୍ଷକମାନେ ବିଜ୍ଞାନ ପଢ଼ି, ଶିଖି, ପଢ଼ାଇବେ କିପରି ? ଗଞ୍ଜାମ ଅଞ୍ଚଳର ଜଣେ ବିଜ୍ଞାନ ଶିକ୍ଷକ ରଘୁନାଥ ପାଢ଼ୀ ଖଣ୍ଡିଏ ଛୋଟ ବିଜ୍ଞାନ ବହି ଲେଖିଥିଲେ । ତାହା ପାଠ୍ୟକ୍ରମ ଅନୁସାରେ ପର୍ଯ୍ୟାପ୍ତ ହୋଇ ନ ଥିବାରୁ ଭାଲେଣି ପଡ଼ିଲା ।

ସେତେବେଳକୁ ବିଜ୍ଞାନ ପ୍ରଚାର ସମିତି ଗଠିତ ହୋଇଥାଏ । ପାଠ୍ୟକ୍ରମ ଉପଯୋଗୀ ଦୁଇ ଖଣ୍ଡ ବିଜ୍ଞାନ ପୁସ୍ତକ ପ୍ରଥମେ ଲେଖା ହେଲା ସମିତି ସଭ୍ୟ ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ର ଓ ଅଧ୍ୟାପକ ହରିହର ପଟ୍ଟନାୟକଙ୍କ ଦ୍ୱାରା । ପରେ ପରେ ୧୯୫୫ ବେଳକୁ ଅନ୍ୟ ପାଠ୍ୟପୁସ୍ତକ ପ୍ରଣେତା ହେଲେ ଡ. ବସନ୍ତ କୁମାର ବେହୁରା, ଡ. ଉପେନ୍ଦ୍ର କୁମାର ପଣ୍ଡା, ଡ. ଗୌରୀରାଣୀ ଘୋଷ, ଡ. ଗଦାଧର ମିଶ୍ର, ଡ. ହରିହର ମିଶ୍ର ଓ ଡ. କୁଳମଣି ସାମଲ । ଏମାନେ ଅଧିକାଂଶ ଥିଲେ ସମିତିର ସକ୍ରିୟ ସଭ୍ୟ । ଏକକାଳୀନ ୫ ଖଣ୍ଡ ବିଜ୍ଞାନ ବହି ଶିକ୍ଷା ନିର୍ଦ୍ଦେଶକଙ୍କଦ୍ୱାରା ଅନୁମୋଦିତ ହେଲା । ଛାତ୍ର ଓ ଶିକ୍ଷକ ଯାହାକୁ ପସନ୍ଦ କରିବେ କିଣି ପଢ଼ିବେ । ଏତେଗୁଡ଼ିଏ ପୁସ୍ତକର ପ୍ରସ୍ତୁତି ସହଜ ହେଲା କେବଳ ବିଜ୍ଞାନ ପ୍ରଚାର ସମିତିର ଉଦ୍ୟମରୁ ।

**ଜନପ୍ରିୟ ବିଜ୍ଞାନ ପୁସ୍ତକ** – ବିଜ୍ଞାନ ପ୍ରଚାର ସମିତି ଗଠିତ ହେବା ପୂର୍ବରୁ ଖୁବ୍ କମସଂଖ୍ୟକ ବିଜ୍ଞାନ ଲେଖା କାଁ ଭାଁ ପ୍ରକାଶିତ ହୋଇଥିଲା । ଅଳ୍ପ କେତେ ଖଣ୍ଡ ବିଜ୍ଞାନ ପୁସ୍ତକ କୃଷି, ସ୍ୱାସ୍ଥ୍ୟରକ୍ଷା, ଜୀବନୀ, ଜୀବଜନ୍ତୁ ଓ ଜ୍ୟୋତିର୍ବିଜ୍ଞାନକୁ ନେଇ ଲେଖା ହୋଇଥିଲା । ଉପଯୁକ୍ତ ବିଜ୍ଞାନ ପରିଭାଷା ସୃଷ୍ଟି ହୋଇ ନ ଥିବାରୁ ଲେଖକମାନେ ବାନ୍ଧିଛନ୍ଦି ହୋଇ ଲେଖୁଥିଲେ ଓ ଅନେକ ତଥ୍ୟ ପରିହାର କରିବା ଫଳରେ ଲେଖା ଦୁର୍ବୋଧ ହୋଇପଡୁଥିଲା ।

ସମିତିର ସଭ୍ୟମାନେ ପ୍ରବନ୍ଧପାଠ ବେଳେ ପାରିଭାଷିକ ଶବ୍ଦ ପ୍ରତି ଧ୍ୟାନ ଦେଲେ ଓ ଲେଖାକୁ ବୋଧଗମ୍ୟ କରିବାପାଇଁ ଆବଶ୍ୟକ ସଂଶୋଧନ କଲେ । ବିଜ୍ଞାନର ବିଭିନ୍ନ ଶାଖାର ଅଧ୍ୟାପକଙ୍କ ଉପସ୍ଥିତିରେ ଆଲୋଚନା ହେଉଥିବାରୁ ତଥ୍ୟଗତ ତ୍ରୁଟିର ଆଶଙ୍କା ଯଥେଷ୍ଟ କମିଗଲା । ଫଳରେ ସମିତିଦ୍ୱାରା ପ୍ରକାଶିତ ପୁସ୍ତକ ସର୍ବସାଧାରଣରେ ଅଧିକ ନିର୍ଭରଶୀଳ ଓ ଗ୍ରହଣୀୟ ହେଲା । ସମିତିର ବାର୍ଷିକ ଅଧିବେଶନରେ ସାଂପ୍ରତିକ ବିଷୟ ଉପରେ ଆଲୋଚିତ ସଂପାନର ଲେଖାମାନଙ୍କୁ ନେଇ ପ୍ରାୟ ୫୦ ଖଣ୍ଡ ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇଛି । ଏହାର ତାଲିକା ହୀରକ ସ୍ମାରକୀରେ ଅନ୍ୟତ୍ର ପ୍ରକାଶିତ । କେତେକ ପୁସ୍ତକର ଏକାଧିକ ସଂସ୍କରଣ ହୋଇଗଲାଣି । ଏହାଛଡ଼ା ବ୍ୟକ୍ତିଗତ ସ୍ତରରେ ସମିତିର ବରିଷ୍ଠ ସକ୍ରିୟ ସଭ୍ୟମାନେ ବହୁପୁସ୍ତକ ରଚନା କରି ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ଏମାନଙ୍କଦ୍ୱାରା ଅନୁପ୍ରାଣିତ ହୋଇ ଶତାଧିକ ଯୁବଲେଖକ ବିଭିନ୍ନ ପତ୍ର ପତ୍ରିକାରେ ଲେଖି ଚାଲିଛନ୍ତି । ଗତ ୬୦ ବର୍ଷ ଧରି ସମିତି ତା'ର ଅଧିବେଶନମାନଙ୍କରେ ଉପଯୁକ୍ତ ପ୍ରଶିକ୍ଷଣ ଦେଇ ରାଜ୍ୟରୁ ବିଜ୍ଞାନ ଲେଖାର ଦୟନୀୟ ଅବସ୍ଥା ଦୂର କରିପାରିଛି ।

**ସହଯୋଗୀ ଓ ଶାଖା ଅନୁଷ୍ଠାନ** – କଟକ ବାହାରେ ଥିବା ଅନେକ ସଭ୍ୟ ସମିତିର ଅଧିବେଶନମାନଙ୍କରେ

ନିୟମିତ ଯୋଗ ଦେଇ ନ ପାରିବାରୁ ସେମାନେ ଶାଖା ଅନୁଷ୍ଠାନ ଖୋଲିଲେ । ବିଶେଷତଃ, ଭୁବନେଶ୍ୱରରେ ଅନେକ ସଭ୍ୟ ସ୍ଥାୟୀ ବାସିନ୍ଦା ହୋଇ ରହିଥିବାରୁ ସେମାନେ ସମିତିର ନିୟମ କାନୁନ ଅନୁସାରେ ମାସକୁ ୨ଥର ଅଧିବେଶନରେ ମିଳିତ ହୋଇ ବିଜ୍ଞାନ ପ୍ରବନ୍ଧମାନ ଓଡ଼ିଆରେ ଲେଖି ଆଲୋଚନା କଲେ । ସେମାନଙ୍କ ମଧରେ ପ୍ରଧାନ ଭୂମିକା ଗ୍ରହଣ କଲେ – ପ୍ରଫେସର ପତିତପାବନ ମିଶ୍ର, ଡ. ଗଙ୍ଗାଧର ସାହୁ, ଡ. ରମେଶ ଚନ୍ଦ୍ର ପରିଡ଼ା, ଅଧାପକ ପ୍ରସନ୍ନ କୁମାର ମିଶ୍ର, ଡ. ସଦାନନ୍ଦ ତରାସିଆ, ଡ. ନିଖିଳ ମୋହନ ପଟ୍ଟନାୟକ, ପ୍ରଫେସର ନିରଞ୍ଜନ ବାରିକ ପ୍ରମୁଖ ଅନେକ ଅଧାପକ ।

୧୯୭୫ରେ ଅନ୍ୟ ଗୋଟିଏ ଶାଖା ଖୋଲିଥିଲା ବୁର୍ଲାଠାରେ । ଡା. ନିମାଇ ଚରଣ ପଣ୍ଡା, ଡା. ନବକିଶୋର ମହାପାତ୍ର, ଡା. ନିତ୍ୟାନନ୍ଦ ସ୍ୱାଇଁ, ଡା. ସୁଦର୍ଶନ ପଟ୍ଟନାୟକ, ଡା. ସାଧୁଚରଣ ସାହୁ, ପ୍ରଫେସର ଗୋପବନ୍ଧୁ ବେହେରା, ପ୍ରଫେସର ମାଧବ ଚନ୍ଦ୍ର ଦାଶ, ଡ. ବିକ୍ରମ କେଶରୀ ସେନାପତି, ଡ. କୁଳମଣି ସାମଲ, ଡ. ରେବତୀ ଚରଣ ଦାସ, ଡ. ବଟକୃଷ୍ଣ ନନ୍ଦ ପ୍ରମୁଖ ଅନେକ ଅଧାପକ, ଇଞ୍ଜିନିୟର ଓ ଡାକ୍ତର ଅତି ଉତ୍ସାହର ସହ ଏହି ଶାଖାର ସଭ୍ୟ ହୋଇଥିଲେ । ଏମାନଙ୍କ ଉଦ୍ୟମରେ ୫ ଖଣ୍ଡ ଜନପ୍ରିୟ ବିଜ୍ଞାନ ପୁସ୍ତକ (୧) ଭୟାବହ କର୍କଟ ରୋଗ (୨) ଆବର୍ଜନାରୁ ସମ୍ପଦ (୩) ଗ୍ରାମ ସେବାରେ ବିଜ୍ଞାନ (୪) ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟ (୫) ପ୍ରଚଳିତ ପ୍ରଥାର ବୈଜ୍ଞାନିକ ସମୀକ୍ଷା ପ୍ରକାଶିତ ହୋଇଛି ।

ଓଡ଼ିଶାରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଗବେଷଣା ଏବଂ ବିଜ୍ଞାନ ସାହିତ୍ୟକୁ ଉତ୍ସାହିତ କରୁଥିବା ବିଜ୍ଞାନ ଏକାଡେମୀ ପ୍ରଥମେ ଡ. କେଶବ ଚନ୍ଦ୍ର ସାହୁ, ଡ. ଗୋକୁଳାନନ୍ଦ ମହାପାତ୍ର, ଡା. ଶଶିନାରାୟଣ ମହାପାତ୍ର ପ୍ରମୁଖ ବିଜ୍ଞାନ ପ୍ରଚାର ସମିତିର ଅଧିକାଂଶ ସଭ୍ୟଙ୍କ ଉଦ୍ୟମରେ ବେସରକାରୀ ସ୍ତରରେ ଆରମ୍ଭ ହୋଇଥିଲା । ପରେ ଏ ପ୍ରକାର ସମିତିର ଗୁରୁତ୍ୱ ଓ ଆବଶ୍ୟକତା ଦୃଷ୍ଟିରୁ ସଭ୍ୟମାନଙ୍କ ଅନୁରୋଧରେ ରାଜ୍ୟ ସରକାର ଏହାର ସମ୍ପୂର୍ଣ୍ଣ ପରିଚାଳନା ଦାୟିତ୍ୱ ବହନ କଲେ । ବିଜ୍ଞାନ ପ୍ରଚାର ସମିତିର ଅନେକ ସଭ୍ୟ ସେମାନଙ୍କ ପୁସ୍ତକ ରଚନା ବା ବୈଜ୍ଞାନିକ ଗବେଷଣାପାଇଁ ଏକାଡେମୀଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ସମିତିର ବରିଷ୍ଠ ସଭ୍ୟ ଡ. ଦେବକାନ୍ତ ମିଶ୍ର ଏକାଡେମୀର ପ୍ରେସିଡେଣ୍ଟ ୨୦୦୦ରୁ ୨୦୦୨ ପର୍ଯ୍ୟନ୍ତ ନିଯୁକ୍ତ ହୋଇଥିଲେ । ସମିତିର ଅନ୍ୟତମ ବରିଷ୍ଠ ସଭ୍ୟ ପ୍ରଫେସର ଡାକ୍ତର ବାସୁଦେବ କର ୨୦୦୩ରୁ ପ୍ରେସିଡେଣ୍ଟ ନିଯୁକ୍ତ ହୋଇ ଏହାର ଉନ୍ନତିମୂଳକ କାର୍ଯ୍ୟ କରିଲାଗିଛନ୍ତି ।

୧୯୭୦ ରେ କେନ୍ଦ୍ର ସରକାରଙ୍କ ଅନୁଦାନରେ ଓଡ଼ିଶା ସରକାର ଆଞ୍ଚଳିକ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ପ୍ରକାଶ କରିବାର ବ୍ୟବସ୍ଥା କଲେ । ସେତେବେଳେ ତାହାର ପରିଚାଳନା ଦାୟିତ୍ୱ ପ୍ରଥମେ ନ୍ୟସ୍ତ ହେଲା ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସଭ୍ୟ, ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ଉପରେ । ସେ ବି. ଏସ୍‌ସି. ଅନର୍ସ ପର୍ଯ୍ୟନ୍ତ ଓଡ଼ିଆ ପାଠ୍ୟପୁସ୍ତକ ଲେଖାଇବାର ଯୋଜନା କରି ବିଭିନ୍ନ ପାରିଭାଷିକ କମିଟି ଗଠନ କରିଥିଲେ ଓ ଲେଖକମାନଙ୍କୁ ନିଯୁକ୍ତି ଦେଇଥିଲେ । ପରେ ସରକାରଙ୍କ ତରଫରୁ ସେ ମଧ ପ୍ରଥମ ନିର୍ଦ୍ଦେଶକ ହୋଇ ଯୋଗ ଦେଲେ । ପ୍ରକୃତରେ ଏହି କ୍ରମୋନ୍ନତ ଅନୁଷ୍ଠାନର ଭିତ୍ତି ସ୍ଥାପିତ ହୋଇଥିଲା ସମିତିର ସଭ୍ୟମାନଙ୍କଦ୍ୱାରା ।

**ବିଦ୍ୟାଳୟ କାର୍ଯ୍ୟକ୍ରମ** – ସମିତିର ଅନ୍ୟ ଏକ ପ୍ରଧାନ କାର୍ଯ୍ୟ ହେଲା ବିଦ୍ୟାଳୟରେ ବିଜ୍ଞାନଶିକ୍ଷାର ଉନ୍ନତିପାଇଁ ସଭା ଓ ସଂପାନର ଆୟୋଜନ କରିବା । ଏଥିପାଇଁ ମାଧମିକ ବିଦ୍ୟାଳୟରେ ଏହାକୁ କାର୍ଯ୍ୟକାରୀ କରିବାକୁ ସମିତିରେ ସଭ୍ୟ ଥିବା କୃତୀ ବିଜ୍ଞାନ ଶିକ୍ଷକମାନେ ଯୋଜନା କଲେ । ସେହି ଶିକ୍ଷକମାନଙ୍କ ମଧରେ ଅଗ୍ରଣୀ ଭୂମିକା ଗ୍ରହଣ କଲେ – ବିଷ୍ଣୁଚରଣ ଜେନା, କଲ୍ୟାଣ ମହାପାତ୍ର, ମହେନ୍ଦ୍ର କୁମାର କାୟସ୍ଥ, ନିରଞ୍ଜନ ପାତ୍ର, ଶରତ ଚନ୍ଦ୍ର ଦାସ, ଗୌରୀଶ୍ୟାମ ଦାସ, ବିଶ୍ୱନାଥ ନାୟକ, କିଶୋର ଚନ୍ଦ୍ର ମହାନ୍ତି, ସାଧୁ ଚରଣ ପ୍ରଧାନ ଓ ଉତ୍କଳ ରଞ୍ଜନ ମହାନ୍ତି । ଏହି ସଭ୍ୟମାନଙ୍କ ଉଦ୍ୟମରେ ସହର ତଥା ଗାଁ-ଗହଳର ବିଦ୍ୟାଳୟମାନଙ୍କୁ ସମିତିର ସଭ୍ୟମାନେ ବିଭିନ୍ନ ସମୟରେ ଯାଇ ଆଲୋଚନା ସଭାମାନ ଆୟୋଜନ କରିଥିଲେ ।

**ପତ୍ରିକା ପ୍ରକାଶନ** – ସମିତିର ଲକ୍ଷ୍ୟ ଥିଲା ଏକ ମାସିକ ବିଜ୍ଞାନ ପତ୍ରିକା ଜରିଆରେ ବିଜ୍ଞାନ ଲେଖା ସରଳ ଓଡ଼ିଆ ଭାଷାରେ ପ୍ରକାଶ କରି ପାଠକ ମହଲରେ ପ୍ରସାର କରିବା । ସୁଖର କଥା ଛାତ୍ରସାଥୀର ପ୍ରକାଶକ ନବକିଶୋର ମହାପାତ୍ର ସମସ୍ତ ଆର୍ଥିକ ସାହାଯ୍ୟ ଦେଇ ଏକ ମାସିକ ପତ୍ରିକା ପ୍ରକାଶନପାଇଁ ସମ୍ମତ ହେଲେ । ୧୯୬୯ ମସିହାରେ 'ବିଜ୍ଞାନ ପ୍ରଭା' ନାମକ ଏକ ମାସିକ ବିଜ୍ଞାନ ପତ୍ରିକା ସମିତି ଆନୁକୂଲ୍ୟରେ ପ୍ରକାଶିତ ହେଲା । ପ୍ରକାଶକ ବ୍ୟାବସାୟିକ ଦୃଷ୍ଟିରୁ ସେଥିରେ କେତେକ ବିଜ୍ଞାପନ ଓ ଅଣସଭ୍ୟମାନଙ୍କର

ବାହାର ଲେଖା ପ୍ରକାଶ କରିବାରୁ ସମିତିର ସଭ୍ୟମାନେ ପତ୍ରିକାରୁ ସମର୍ଥନ ପ୍ରତ୍ୟାହାର କଲେ । ୧୯୭୭ରେ ସମିତି ନିଜ ପ୍ରଚେଷ୍ଟାରେ ଅନ୍ୟ ଏକ ଦ୍ୱିମାସିକ ବିଜ୍ଞାନ ପତ୍ରିକା 'ବିଜ୍ଞାନାଲୋକ' ପ୍ରକାଶ କଲା । ଏହାର ପ୍ରକାଶନ ଓ ବିତରଣ ଦାୟିତ୍ୱ ସମିତି ବହନ କରିବାରୁ ତତ୍‌କାଳୀନ ସଭ୍ୟ ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ, ଡାକ୍ତର ଶୈଳେଶ୍ୱର ନନ୍ଦ ଅନ୍ୟ ସଭ୍ୟମାନଙ୍କ ସହଯୋଗରେ ଅକ୍ଲାନ୍ତ ଉଦ୍ୟମ କଲେ । ପତ୍ରିକା ମଧ ଛାତ୍ରଛାତ୍ରୀଙ୍କ ମହଲରେ ବିଶେଷ ଆଦୃତ ହେଲା । ତଥାପି ପତ୍ରିକାର ପ୍ରକାଶନ ଖର୍ଚ୍ଚ ମେଣ୍ଟିଲା ନାହିଁ । ଫଳରେ ପ୍ରକାଶନରେ ଅନିୟମିତତା ଦେଖାଦେଲା । ସେହି ରେଜିଷ୍ଟ୍ରିଭୁକ୍ତ ପତ୍ରିକାଟି (ରେଜିଷ୍ଟ୍ରି ନଂ ୩୩୮୫୨/୭୭)ର ବ୍ୟୟଭାର ବହନକରି ପ୍ରକାଶ କରିବାକୁ ବିଦ୍ୟାପୁରୀର ପରିଚାଳକ ପୀତାମ୍ବର ମିଶ୍ର ଆଗ୍ରହ ଦେଖାଇଲେ । ପତ୍ରିକାଟି ପରିମାର୍ଜିତ ହୋଇ ୨୦୦୮ ମସିହା ପର୍ଯ୍ୟନ୍ତ ପ୍ରକାଶିତ ହେଉଥିଲା । ବିତରଣର ସୁବିଧା ନ ଥିବାରୁ ଏହା ପ୍ରସାର ସଂଖ୍ୟା ବୃଦ୍ଧି ପାଇଲା ନାହିଁ । ବର୍ତ୍ତମାନ ପ୍ରକାଶନକୁ ସ୍ଥଗିତ ରଖାଯାଇଛି । ଭବିଷ୍ୟତରେ ସୁବିଧା ହେଲେ ଏହା ପୁନଃ ପ୍ରକାଶିତ ହେବ ।

**କର୍ମଶାଳା ଓ ବିଶେଷ ଅଧିବେଶନ** – ଓଡ଼ିଶା ସରକାରଙ୍କ ଅନୁଦାନରେ ପ୍ରାଥମିକ ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷାର ଉନ୍ନତିପାଇଁ ଏକ ବିଜ୍ଞାନ ଶିକ୍ଷକ କର୍ମଶାଳା ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ବକ୍ତୃତା କକ୍ଷରେ ତା ୮।୭।୮୫ଠାରୁ ତା ୧୩।୭।୮୫ ପର୍ଯ୍ୟନ୍ତ ୬ ଦିନ ପାଇଁ ଅନୁଷ୍ଠିତ ହୋଇଥିଲା । ସେହି ସ୍ଥାନରେ ଭାରତ ସରକାରଙ୍କ ଆନୁକୂଲ୍ୟରୁ ସମିତି ତା ୧୭।୬।୯୯ରୁ ତା ୨୦।୬।୯୯ ପର୍ଯ୍ୟନ୍ତ ଓଡ଼ିଆ ବିଜ୍ଞାନ ଲେଖାକୁ ଉତ୍ସାହିତ କରିବାପାଇଁ ଏକ ବିଜ୍ଞାନ ଲେଖକ କର୍ମଶାଳା ଆୟୋଜନ କରିଥିଲା । ଏହାଛଡ଼ା ଗତ ୬୦ବର୍ଷ ମଧରେ ସାଂପ୍ରତିକ ବିଜ୍ଞାନ ବିଷୟରେ ସମିତି ପ୍ରାୟ ୪୦ଟି ବିଶେଷ ଅଧିବେଶନ ବା ଆଲୋଚନା ଚକ୍ର ବିଶିଷ୍ଟ ବିଶାରଦମାନଙ୍କ ସହାୟତାରେ ଆୟୋଜନ କରିଛି । ଏ ସମ୍ବନ୍ଧରେ କେତେକ ତଥ୍ୟ ପୂର୍ବରୁ ସୁବର୍ଣ୍ଣ ସ୍ମାରକୀରେ ପ୍ରକାଶିତ ହୋଇଛି ।

**ସମ୍ମାନ ଓ ପୁରସ୍କାର** – ବିଜ୍ଞାନ ଛାତ୍ରଛାତ୍ରୀଙ୍କ ମଧରେ ବିଭିନ୍ନ ବାର୍ଷିକ ପ୍ରତିଯୋଗିତା କରାଇ ପୁରସ୍କାର ପ୍ରଦାନ କରାଯାଏ । ଏହାଛଡ଼ା ସମିତିର କେତେକ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସହାୟତାରେ ପରିବେଶ, ସ୍ୱାସ୍ଥ୍ୟ ତଥା ଜନପ୍ରିୟ ବିଜ୍ଞାନ ଲେଖା, ଭାଷଣ ଓ ପ୍ରକାଶନକୁ ଉତ୍ସାହିତ କରିବାପାଇଁ ସମିତି ପ୍ରତିବର୍ଷ ବାର୍ଷିକ ଅଧିବେଶନରେ ବିଭିନ୍ନ ସମ୍ମାନ/ପୁରସ୍କାର ଲେଖକ/ପ୍ରକାଶକଙ୍କୁ ପ୍ରଦାନ କରିଥାଏ (ବିସ୍ତୃତ ତଥ୍ୟ ଅନ୍ୟତ୍ର ସୂଚିତ) ।

ଏହି ହୀରକ ଜୟନ୍ତୀ ଉତ୍ସବରୁ ପ୍ରତିଷ୍ଠାତା ସଭ୍ୟ ପ୍ରଫେସର ଡ. ଗୋକୁଳାନନ୍ଦ ମହାପାତ୍ରଙ୍କ ସମ୍ମାନାର୍ଥେ 'ଗୋକୁଳାନନ୍ଦ ମହାପାତ୍ର ସମ୍ମାନ' ପ୍ରଚଳିତ ହେଉଛି । ସମିତି ତରଫରୁ କେତେକ ସଭ୍ୟଙ୍କର ସ୍ୱେଚ୍ଛାକୃତ ଦାନରେ ଏହି ସମ୍ମାନ ଆୟୋଜିତ । ପ୍ରଫେସର ମହାପାତ୍ର ଜୀବନବ୍ୟାପୀ ଅକ୍ଲାନ୍ତ ଉଦ୍ୟମଦ୍ୱାରା ସମିତିକୁ କର୍ମଚଞ୍ଚଳ କରି ଚଳାଇ ରଖିଥିବାରୁ ସଭ୍ୟ/ସଭ୍ୟାମାନେ ତାଙ୍କର ଦୀର୍ଘ ଓ ନିରାମୟ ଜୀବନ କାମନା କରି କୃତଜ୍ଞତାର ସାମାନ୍ୟ ସନ୍ତକସ୍ୱରୂପ ଏହି ସମ୍ମାନର ଅୟମାରମ୍ଭ କରିଛନ୍ତି । ପ୍ରତିବର୍ଷ ବାର୍ଷିକ ଅଧିବେଶନରେ ନିମନ୍ତ୍ରିତ ମୁଖ୍ୟ ଅତିଥିଙ୍କୁ ଏହା ପ୍ରଦାନ କରାଯିବ ।

**ସମ୍ବିଧାନ ଓ ନିର୍ବାଚନ** – ୧୯୫୫ରୁ ପ୍ରଚଳିତ ସମ୍ବିଧାନକୁ ପରିମାର୍ଜିତ କରି ଏକ ନୂତନ ସମ୍ବିଧାନ ୨୦୦୭ରେ ପ୍ରଣୟନ କରାଯାଇଛି । ଏଥିରେ ବାର୍ଷିକ ସଭ୍ୟ ପଦ ଉଠାଇ କେବଳ ଆଜୀବନ ସଭ୍ୟ ପଦ ରଖାଯାଇଛି । ପ୍ରତିବର୍ଷ ନଭେମ୍ବର ୪ର୍ଥ ରବିବାର ଅପରାହ୍ନ ୪ ଘଟିକା ସମୟରେ କୌଣସି ଅନିବାର୍ଯ୍ୟ କାରଣ ନ ଥିଲେ, ନିର୍ବାଚନଦ୍ୱାରା ସଭାପତି, ଉପସଭାପତି, ସଂପାଦକ, ଯୁଗ୍ମ ସଂପାଦକ, କୋଷାଧ୍ୟକ୍ଷ, ପ୍ରକାଶନ ସମ୍ପାଦକ ଓ ଅନ୍ୟ ୫ ଜଣ ସଭ୍ୟଙ୍କୁ ନେଇ କାର୍ଯ୍ୟନିର୍ବାହୀ ସମିତି ଗଠନ କରାଯିବ । ବିଜ୍ଞାନ ପ୍ରଚାର ଓ ପ୍ରସାରରେ ଆଗ୍ରହୀ ବ୍ୟକ୍ତି ସମିତିର ଅନୁମୋଦନ କ୍ରମେ ସଭ୍ୟ ହେବାକୁ ଯୋଗ୍ୟ ହୋଇପାରିବେ ।

**ଶେଷକଥା** – ସମିତି ୧୯୪୯ରେ ଗଠିତ । ୧୯୬୪ରେ ରେଜିଷ୍ଟ୍ରିଭୁକ୍ତ (ନଂ.୧୧୨୬/୧୧୩-୧୯୬୪) । ଏହା ପରିଚାଳନାପାଇଁ ସମ୍ବିଧାନ ସଂଶୋଧିତ ହୋଇସାରିଲାଣି । ସାରା ଓଡ଼ିଶାରେ ୪୦୦ରୁ ଅଧିକ ଆଜୀବନ ସଭ୍ୟ ଅଛନ୍ତି । ପ୍ରତି ଅଧିବେଶନରେ ଆଲୋଚନା ଓ ସମାଲୋଚନା ହୁଏ । ମତାନ୍ତର ଓ ମନାନ୍ତର ପ୍ରକାଶ ପାଏ । ତଥାପି ସମିତିର ସଭ୍ୟମାନେ ସମ୍ବିଧାନରେ ଘୋଷିତ ଆଭିମୁଖ୍ୟ 'ସାମାଜିକ ସମ୍ପର୍କ ଓ ସୌହାର୍ଦ୍ଦ୍ୟ' ପ୍ରତି ଦୃଷ୍ଟି ରଖି ଅଗ୍ରସର ହେଉଛନ୍ତି । ସୁରୁଖୁରୁରେ ୬୦ ବର୍ଷ ବିତିଲାଣି । ଏମିତି ଚାଲିଲେ ଆହୁରି ଅନେକ ବର୍ଷ ଚାଲିବ । କୌଣସି ନିୟମ କାନୁନ ପ୍ରତିବନ୍ଧକ ହେବ ନାହିଁ ।

ଉପସଭାପତି, ବିଜ୍ଞାନ ପ୍ରଚାର ସମିତି

# ସମିତିର ବିଜ୍ଞାନ ପତ୍ରିକା 'ବିଜ୍ଞାନାଲୋକ'

ଡ. ଗୋକୁଳାନନ୍ଦ ମହାପାତ୍ର

ବିଜ୍ଞାନକୁ ପ୍ରଚାର କରିବାପାଇଁ ହେଲେ ଖାଲି ଲୋକପ୍ରିୟ ବିଜ୍ଞାନ ପୁସ୍ତକ ଲେଖିଲେ ହେବ ନାହିଁ କି ପତ୍ରପତ୍ରିକାରେ ଗୋଟାଏ ଦୁଇଟି ବିଜ୍ଞାନ ପ୍ରବନ୍ଧ ଛାପିଦେଲେ ହେବନି । ବିଜ୍ଞାନର ଉପଯୁକ୍ତ ପ୍ରଚାରପାଇଁ ଆବଶ୍ୟକ ଏକ ଭଲ ବିଜ୍ଞାନ ପତ୍ରିକା । ତେଣୁ ମିଟିଂରେ ଦିନେ ସିଦ୍ଧାନ୍ତ ହେଲା ବିଜ୍ଞାନ ପତ୍ରିକା ବାହାର କରିବାପାଇଁ । ପ୍ରଶ୍ନହେଲା, ଆମେ ସିନା ଲେଖିଦେବା, ଏହାକୁ ଛାପିବ କିଏ ? ବଜାରକୁ ପଠାଇ ବିକ୍ରୟ ଆଦି କରିବ କିଏ ? ଆମେ ସମସ୍ତେ ଚାକିରି କଲାବାଲା । ଏସବୁ କାମ କରିବ କିଏ ? ତେଣୁ ଠିକ୍ କଲୁ, ଏହାକୁ କୌଣସି ଏକ ପୁସ୍ତକ ପ୍ରକାଶକଙ୍କୁ ଦେଲେ ଠିକ୍ ହେବ । ବହୁ ପ୍ରକାଶକଙ୍କ ସହିତ କଥାବାର୍ତ୍ତା କରି ଜଣଙ୍କୁ ଦିଆଗଲା । ଆମ ପତ୍ରିକାର ନାଁ ଦିଆଗଲା 'ବିଜ୍ଞାନ ପ୍ରଭା' । ବିଜ୍ଞାନ ପ୍ରଚାର ସମିତିର ମୁଖପତ୍ର ଭାବରେ ଏହା ପ୍ରକାଶ ପାଇଲା । ଓଡ଼ିଶାରେ ସେତେବେଳେ କୌଣସି ବିଜ୍ଞାନ ପତ୍ରିକା ନ ଥାଏ । ପିଲାମାନେ ଓ ସାଧାରଣ ଲୋକେ ଏହାକୁ ଆଦରର ସହିତ କିଣି ପଢ଼ିଲେ । କିଛିଦିନ ପରେ ସମିତିର ଏହାର ପ୍ରକାଶକଙ୍କ ସହିତ ମତଦ୍ୱୈଧ ହେବାରୁ ଆମେ ପତ୍ରିକାଟିକୁ ଛାଡ଼ିଦେଲୁ । ପ୍ରକାଶକ ତାଙ୍କର ନିଜେ ପତ୍ରିକାଟି ଚଳାଇଲେ । ଏହିଭଳି କିଛି ଦିନ କଟିଗଲା । ସମିତିର ନିଜର ପତ୍ରିକାଟିଏ ନାହିଁ ବୋଲି ସମସ୍ତଙ୍କ ମନ କଷ୍ଟ ହେଲା । ପୁଣି ଆମେ ଆଲୋଚନା କଲୁ, ଆମେ ନିଜେ ପତ୍ରିକାଟି ଛପାଇ ବଜାରରେ ବିକ୍ରୟ କରିବୁ । ଛପା ଦାୟିତ୍ୱ ଆମର, ଲେଖା ଦାୟିତ୍ୱ ଆମର, କିନ୍ତୁ ବିକ୍ରୟ ଦାୟିତ୍ୱ କିଏ ନେବ, ସେହି ହେଲା କଥା । ବିଜ୍ଞାନ ପ୍ରଭାର ପ୍ରକାଶକ ଦିନେ ସ୍ୱତଃପ୍ରବୃତ୍ତ ହୋଇ କହିଲେ ଆପଣମାନେ ଯଦି ପତ୍ରିକା ବାହାର କରନ୍ତି, ତେବେ ମୁଁ ତାହାର ବିକ୍ରୟ ଭାର ନେବି । ସେ ନିଜ ପତ୍ରିକା 'ବିଜ୍ଞାନ ପ୍ରଭା' ସହିତ ଆମ ପତ୍ରିକାକୁ ଚଳାଇବେ । ବିଜ୍ଞାନ ପ୍ରଭା ଦୁଇମାସରେ ଥରେ ବାହାରେ । ଆମ ପତ୍ରିକା ମଧ୍ୟ ସେଇଆ ହେଲା । ଗୋଟିଏ ମାସ ବିଜ୍ଞାନ ପ୍ରଭା ବାହାରିବ, ପର ମାସରେ ଆମ ପତ୍ରିକା ଚାଲିବ । ଅସୁବିଧା କିଛି ନାହିଁ । ସେହି ଅନୁସାରେ ପତ୍ରିକାର ନାମ କ'ଣ ହେବ ? ଦିଲ୍ଲୀ ଅଫିସ୍‌କୁ ବିଭିନ୍ନ ନାଁ ପଠାଇ 'ବିଜ୍ଞାନାଲୋକ' ନାଁଟି ସିଦ୍ଧାନ୍ତ ହେଲା । ଆମେ ଦିଲ୍ଲୀରୁ ଅନୁମତି ପାଇଲୁ । ପତ୍ରିକା ବାହାର କରାଯିବ । ପତ୍ରିକା ବାହାର କରିବାପାଇଁ ଆବଶ୍ୟକ ଅର୍ଥ କାହିଁ ?

ଏହି ଘଟଣାର କିଛିଦିନ ପୂର୍ବରୁ ବିଜ୍ଞାନ ପ୍ରଚାର ସମିତିର ରୌପ୍ୟ ଜୟନ୍ତୀ ଯାଇଥାଏ । ରୌପ୍ୟଜୟନ୍ତୀରେ ସାତ ଶହ ପୃଷ୍ଠାର ଏକ ବିରାଟ ପୁସ୍ତକ 'ଜୟନ୍ତିକା' ସମିତି ତରଫରୁ ପ୍ରକାଶ ପାଇଥାଏ । ତେଣୁ ସମିତି ହାତରେ ଯାହା କିଛି ଅର୍ଥ ଥିଲା, ସେସବୁ ଏଥିରେ ପୂରାପୂରି ଖର୍ଚ୍ଚ ହୋଇଯାଇଥିଲା । କାଗଜଦୋକାନୀଠାରୁ ବାକିରେ କାଗଜ, ବ୍ଲକ୍ ତିଆରିବାଲାଠାରୁ ବାକିରେ ଛବି ପାଇଁ ବ୍ଲକ୍, ଛାପିଲାବାଲା ପ୍ରେସ୍‌ଠାରୁ ବାକିରେ ଛପାଇ ଯେକୌଣସି ମତେ ପ୍ରଥମ ସଂଖ୍ୟାଟି ବାହାର କଲୁ । ବିଜ୍ଞାନ ପ୍ରଭାର ପ୍ରକାଶକ ବିଜ୍ଞାନ ପ୍ରଭା ସହ ଆମ ପତ୍ରିକାକୁ ବିକ୍ରୟ କଲେ । ଆମେ ହାତରେ କିଛି ପତ୍ରିକା ରଖିଲୁ, ବିକ୍ରୟ କରିବାପାଇଁ । ସ୍ଥାନୀୟ ଖବରକାଗଜ ଏଜେଣ୍ଟମାନଙ୍କୁ କିଛି କିଛି ଦେଲୁ ବିକ୍ରୟପାଇଁ । କିଛି ଦିନ ପରେ ଦେଖାଗଲା, ବିଜ୍ଞାନ ପ୍ରଭା ପ୍ରକାଶକ ଆମ ପ୍ରାପ୍ୟ ଦେଇଦେଲେ, କିନ୍ତୁ ସ୍ଥାନୀୟ ଖବରକାଗଜ ଏଜେଣ୍ଟମାନେ ପୂରାପୂରି ପ୍ରାପ୍ୟ ଦେଲେନି । ଦୁଇ ତିନିଟା ସଂଖ୍ୟା ବାହାରିବା ପରେ ଦେଖାଗଲା ଯେ ସେମାନଙ୍କଠାରୁ ଆମ ପ୍ରାପ୍ୟ ଆଦାୟ କରିବା ସମ୍ଭବପର ନୁହେଁ । ବିଜ୍ଞାନ ପ୍ରଭାର ପ୍ରକାଶକଙ୍କ କ'ଣ ହେଲା କେଜାଣି ଆମ ପତ୍ରିକା ପ୍ରତି ଆଗ ଭଳି ଆଗ୍ରହ ଦେଖାଇଲେନି । ତେଣୁ ଚିନ୍ତା ପଡ଼ିଲା କ'ଣ କରାଯିବ । ପତ୍ରିକା ଛାପିବାରେ ଯାହା ଖରଚ ହେଉଛି, ବିକ୍ରୟରୁ ତାହା ଭରଣା ହେଉନି । ତେଣୁ ଠିକ୍ କଲୁ, ପତ୍ରିକା ପ୍ରକାଶନ ବନ୍ଦ କରିଦେବୁ । ଏହି ସମୟରେ ଆମକୁ ସାହାଯ୍ୟ କରିବାପାଇଁ ବାହାରି ଆସିଲେ

ପତ୍ରପତ୍ରିକାର ଜନୈକ ଏଜେଣ୍ଟ । ସେ ବିଜ୍ଞାନାଲୋକର ପୂରାପୂରି ବିକ୍ରୟ ଭାର ନେଲେ । ପ୍ରତି ମାସ ସେ ପ୍ରାପ୍ୟ ଦେଇଦେବେ ବୋଲି କହିଲେ । ବାକି ବକରା କିଛି ରଖିବେ ନାହିଁ । ଏଥର ପତ୍ରିକା ପୁଣି ବାହାରିଲା । ବଜାରରେ ବିକ୍ରୟ ଚାଲିଲା । ପତ୍ରିକାର କାଟ୍‌ତି ବଢ଼ି ଚାଲିଲା । ପ୍ରଥମରୁ ଆମେ ଛପାଉଥିଲୁ ହଜାରେ, ଛଅ ସାତ ବର୍ଷ ଭିତରେ ଏହାର କାଟତି ହୋଇଥିଲା ତିନିହଜାର । ପତ୍ରିକାରୁ ଭଲ ଲାଭ ହେଲା । ଆମ ଏଜେଣ୍ଟ ଆଶା କରିଥିଲେ ଏହାର ଦଶବର୍ଷ ପୂରଣ ହେଲା ବେଳକୁ କାଟତି ବଢ଼ି ବଢ଼ି ପାଞ୍ଚହଜାରରେ ପହଞ୍ଚିଯିବ । ଏହି ସମୟରେ ହଠାତ୍ ଏକ ଦୁର୍ଯୋଗ ଦେଖାଦେଲା । ଆମର ଏଜେଣ୍ଟ ମହାଶୟ ହଠାତ୍ ଠିକ୍ କଲେ ସେ ପତ୍ରିକା କାରବାର ଛାଡ଼ି କଟକ ଛାଡ଼ି ଦିଲ୍ଲୀରେ, ଯାଇ ବ୍ୟବସାୟ କରିବେ । ଏହି ସମୟରେ ଆମେ ଚାହିଁଲୁ ଆଉ କାହାକୁ ବିକ୍ରୟ ଭାର ଦେବାପାଇଁ । ପତ୍ରିକା ପ୍ରାୟ ବନ୍ଦ ଅବସ୍ଥାକୁ ଆସିଯାଇଥିଲା । ଏହି ସମୟରେ ପ୍ରକାଶକ ସଂସ୍ଥା 'ବିଦ୍ୟାପୁରୀ' ଆମକୁ ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କଲେ, ପତ୍ରିକା ପୁଣି ଚାଲିଲା । ସେ ପ୍ରକାଶକ ଥିବାବେଳେ ଆମେ ପତ୍ରିକାର କାଂସ୍ୟ ଜୟନ୍ତୀ ଓ ରୌପ୍ୟ ଜୟନ୍ତୀ ପାଳନ କଲୁ । ସେହି ଉତ୍ସବରେ ବିଜ୍ଞାନାଲୋକର ବିଶିଷ୍ଟ ଲେଖକମାନଙ୍କୁ ମାନପତ୍ର ଓ ଅଙ୍ଗବସ୍ତ୍ର ଦେଇ ଏଥିପାଇଁ ଆହୂତ ସଭାରେ ସମ୍ମାନିତ କଲୁ । ଆମ 'ବିଜ୍ଞାନାଲୋକ' କୁ ଛାଡ଼ି ସରକାରଙ୍କ ତରଫରୁ 'ବିଜ୍ଞାନ ଦିଗନ୍ତ' ବାହାରିଲା । ତା'ଛଡ଼ା 'ବିଜ୍ଞାନ ତରଙ୍ଗ' ଓ 'ପରିବେଶ ତରଙ୍ଗ' ପତ୍ରିକା ମଧ୍ୟ ବାହାରୁଛି । ବର୍ତ୍ତମାନ ଓଡ଼ିଶାରେ ପାଞ୍ଚ ଛଅ ଗୋଟି ବିଜ୍ଞାନ ପତ୍ରିକା ବାହାରୁଛି । ଯାହା ହେଉ, ଏହା ଆମ ରାଜ୍ୟପାଇଁ ଏକ ସୁଖ ଖବର । ଆମେ ଚାହିଁଥିଲୁ ବିଜ୍ଞାନ ପ୍ରଚାର । ଗୋଟିଏ ପତ୍ରିକାରେ ଆରମ୍ଭ କଲୁ । ବର୍ତ୍ତମାନ ପାଞ୍ଚ ଛଅଗୋଟି ପତ୍ରିକା ବିଜ୍ଞାନ ପ୍ରଚାରକୁ ପାଞ୍ଚ ଛଅଗୁଣ ବେଗରେ ଆଗେଇ ନେଉଛନ୍ତି । ଆମ ଉଦ୍ଦେଶ୍ୟ ସାଧିତ ହୋଇଛି । ଏହିସବୁ ପତ୍ରପତ୍ରିକା ଜରିଆରେ ଆମ ରାଜ୍ୟର ଛାତ୍ରଛାତ୍ରୀ ତଥା ଜନସାଧାରଣ ବିଜ୍ଞାନର ବହୁ ଜଟିଳ ତତ୍ତ୍ୱକୁ ବୁଝିବାରେ ସମର୍ଥ ହେଉଛନ୍ତି । ବିଜ୍ଞାନର ଅଗ୍ରଗତି କେମିତି ଚାଲିଛ, ଏହିସବୁ ପତ୍ରିକା ପଢ଼ି ସେମାନେ ଜାଣି ପାରୁଛନ୍ତି । ଓଡ଼ିଶାରେ ଆମେ ପ୍ରଥମେ ଗୋଟିଏ ବିଜ୍ଞାନ ପତ୍ରିକା ପ୍ରକାଶ କଲୁ । ତାହା ଲୋକପ୍ରିୟ ହେବାରୁ ଏତେଗୁଡ଼ିଏ ପତ୍ରପତ୍ରିକା ବାହାରି ପାରିଲା । ଆମେ ଆଶା କରୁଛୁ, ଆମର ଉଦ୍ଦେଶ୍ୟ ସାଧିତ ହେବା ସଙ୍ଗେ ସଙ୍ଗେ ଏହି ପତ୍ରିକାମାନଙ୍କର ମାନ ବଢ଼ିଯିବ ଓ ସେମାନେ ଅଧିକ ଅଧିକ ବିଜ୍ଞାନ ସମ୍ବନ୍ଧୀୟ ତାଜା ଖବର ପ୍ରକାଶ କରି ଆମ ପାଠକ ସମାଜକୁ ଉଦ୍‌ବୁଦ୍ଧ କରିବେ ।

ସଭାପତି, ବିଜ୍ଞାନ ପ୍ରଚାର ସମିତି









# Some Reminiscence about the Vijnan Prachar Samiti

**Dr. Sukumar Aditya**

I have been requested by the Editors of the Diamond Jubilee Volume of the Vijnan Prachar Samiti to write about my association with the Samiti. That takes me back to our days in Ravenshaw College where my friend Prof. Gokulananda Mahapatra and myself were class-mates from the intermediate classes. In the college we had a science club which was managed by B.Sc. students. Gokulananda and myself took great interest in its activities which involved organising popular science lectures. At that stage Gokulananda used to write popular science articles which were published in local magazines for children. We joined the post graduate classes of Calcutta University (1945-1947). During that period we saw the formation of Bangiya Vijnan Parisad by Professor Satyendranath Bose of Bose-Einstein fame. The Parisad started publishing "Jnan-Vijnan" a popular science magazine in Bengali. That inspired us to plan establishing Vijnan Prachar Samiti. It was through the efforts of Gokulananda that the first meeting of the Vijnan Prachar Samiti was conveyed in Professor Dr. Gopalchandra Patnaik's quarters with the following members :

Dr. Gopal Chandra Patnaik,
Dr. Sadasiva Mishra,
Dr. Radhanath Rath,
Dr. Shymananda Patnaik,
Dr. Raikrushna Mohanty,
Dr. Mahendra Chandra Mishra
Sri Krushna Charan Dash
Dr. Gokulananda Mohapatra
and Dr. Sukumar Aditya

In the untimely passing away of Dr. Shyamananda Patnaik (in fifties) the Samiti lost an active member. I still remember how exuberant he was ! The samiti has passed sixty years; time has taken its toll. At present only three of the founder-members, Dr. Radhanath Rath, Dr. Gokulananda and myself are there to see the Diamond Jubilee of the Samiti.

In early years of the Samiti, members met every two weeks, at times in the residence of senior members, but mostly in the teachers Common Room of Ravenshaw College.

Membership increased with time. We had invited guests also. One such guest-member was Mr. Sahoo, son of Purna Chandra Sahoo, a famous sweetmeat maker. He at times sponsored high tea in our meetings. I often remember another pleasant occasion. Through Mr. M.C. Nath, an Administrative officer of Govt of Orissa, the Samiti organised a trip to Paradip, which was under construction at that time, most of the members joined; we enjoyed going around the port area under construction and also the confluence of the river Mahanadi with the sea, which was really shallow.

We had a mutual understanding that each member should write at least one popular scientific article in a year. My fellow members, in view of my inefficiency in writing popular articles, were kind enough to excuse me from that condition. I agreed to do the editing of Samiti publication. I remember going through

the manuscript of a book, Gokulananda wrote on 'Atom Bomb'. While editing we would argue on language, expression etc. The book was a great success. Except for my absence on studyleave I attended all the meetings and functions of the Samiti till 1960 when I joined Calcutta University. My association with the Samiti remained the same. I occasionally attended the functions and General Body meeting. In 1973 I presided over the General Body meeting held in Bhubaneswar in Dr. Harish Chandra Baral's residence. Some years ago Samiti felicitated Prof Trilochan Pradhan, an internationally known theoretical Physicist, Ex Director of the Theoretical Physics Institute, Bhubaneswar. The President of the Samiti asked me to offer the felicitation on its behalf to Professor Pradhan whom I taught in the B.Sc. classes. It was a great pride and honour for a former teacher.

I personally feel the role of Vijnan Prachar Samiti in popularisation of science has been impressive. About 50 books have been published under its banner.

Gokulananda and myself often thought the Samiti should have a building and a small museum-cum-laboratory where the school children could come, see scientific demonstrations and if possible do some experiments themselves. I do not know if that dream of ours will ever materialize.

I admire the contribution of my friend Professor Gokulananda Mahapatra and for his dedication to the cause of the Vijnan Prachar Samiti and also that of the other members. I enjoyed the affection of the senior members and also that of my contemporaries. The younger members always held me in respect. I always adore it.

I am happy that the younger generation has taken over and mostly our students and grand students are carrying on the banner. They have arranged for the Diamond Jubilee Celebration of the Vijnan Prachar Samiti. I am sure they will with greater success celebrate the Platinum Jubilee.

I wish them all success and bright future of the Samiti.

Founder-member, Vijnan Prachar Samiti
Formerly Lecturer in Chemistry,
Ravenshaw College,Cuttack.
Retired Professor in Physical Chemistry
Calcutta University, Calcutta









# ବିଜ୍ଞାନ ପ୍ରଚାର ସମିତି : ପ୍ରାରମ୍ଭ ଓ ଆଭିମୁଖ୍ୟ

ଡକ୍ଟର ରାଧାନାଥ ରଥ

୧୯୪୬ରୁ ୧୯୪୯ ପର୍ଯ୍ୟନ୍ତ ମୁଁ ଲଣ୍ଡନରେ ରହିଥିଲି । ମନୋବିଜ୍ଞାନରେ ଡକ୍ଟରେଟ ପାଇବାପାଇଁ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲି । କଟକ ପରି ଗୋଟିଏ ଅନୁନ୍ନତ ସହରରୁ ଯାଇଥିଲି ବୋଲି ମୋର ମନ ସବୁବେଳେ ବ୍ୟାକୁଳ ଥାଏ ମନୋବିଜ୍ଞାନ ଛଡ଼ା ରାଜନୀତି ଓ ବିଜ୍ଞାନ ସହ ଅନ୍ୟସବୁ ବିଷୟରେ ଅଧିକ ତଥ୍ୟ ଜାଣିବାପାଇଁ ଏକ ବିଶ୍ୱବିଖ୍ୟାତ ସହରରେ । ତେଣୁ ମୁଁ ସେହିପରି ବହୁ ଆଲୋଚନା ସଭାରେ ଯୋଗ ଦେଉଥିଲି ।

• ପ୍ରଫେସର ଜେ.ବି.ଏସ୍. ହଲଡେନ ଥିଲେ ଜଣେ ଆନ୍ତର୍ଜାତିକ ପ୍ରସିଦ୍ଧ ବୈଜ୍ଞାନିକ । ସେ ସାଧାରଣ ଲୋକେ ବୁଝିଲା ପରି ଭାଷାରେ ତାଙ୍କ ଜୀବବିଜ୍ଞାନ ଗବେଷଣାଲବ୍ଧ ଜ୍ଞାନକୁ ଜନ ସାଧାରଣଙ୍କ ଆଗରେ କହୁଥିଲେ । ମୁଁ ଏପରି ଗୋଟିଏ ଜାଗାରେ ଉପସ୍ଥିତ ହୋଇ ତାଙ୍କର ବକ୍ତୃତା ଶୁଣିଲାପରେ ତାଙ୍କର ଗବେଷଣାଲବ୍ଧ ବିଜ୍ଞାନ ବାର୍ତ୍ତା ସହଜରେ ବୁଝିପାରିଲି । ତା'ପରେ ମୋର ଆଗ୍ରହ ବଢ଼ି ବଢ଼ି ଚାଲିଲା । ତା'ପରେ ଆଉଜଣେ ବିଶିଷ୍ଟ ବୈଜ୍ଞାନିକ ଜେ.ଡି. ବାର୍ଣ୍ଣାଲଙ୍କ ବିଷୟରେ ଶୁଣିଲି । ସେ ବିଖ୍ୟାତ ଜୀବରସାୟନବିତ୍ ଥିଲେ ।

ତା'ପରେ ଶୁଣିଲି ଜଣେ ବିଖ୍ୟାତ ଦାର୍ଶନିକ ତଥା ଗଣିତଜ୍ଞ ବର୍ଟ୍ରାଣ୍ଡ ଅର୍ଥର ଉଇଲିୟମ ରସେଲଙ୍କ ବିଷୟରେ ।

ପି.ଏମ୍.ଏସ୍ ବ୍ଲାକେଟ ଜଣେ ବିଶିଷ୍ଟ ବୈଜ୍ଞାନିକ । ପରମାଣୁ ଶକ୍ତି ଗବେଷଣା କେନ୍ଦ୍ରର ଚେୟାରମାନ ଥିଲେ । ତାଙ୍କର ବକ୍ତୃତା ଶୁଣିଲି । ଜାଁ ପଲ ଚାଲର୍ସ ସାର୍ତେ ଜଣେ ବିଖ୍ୟାତ ଫରାସୀ ଦାର୍ଶନିକ । ତାଙ୍କୁ ୧୯୬୪ରେ ସାହିତ୍ୟରେ ନୋବେଲ ପୁରସ୍କାର ଦିଆଯାଇଥିଲା । କିନ୍ତୁ ସେ ତାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । ତାଙ୍କର ବହୁତ ଆଲୋଚନା ଶୁଣିଲି । ଏପରି ବହୁ ବିଖ୍ୟାତ ଓ ଚିନ୍ତାଶୀଳ ଲୋକେ ସାଧାରଣ ଲୋକଙ୍କ ଆଗରେ ଆସି ବକ୍ତୃତା କରନ୍ତି, କାରଣ ସେମାନଙ୍କ ମତରେ ସାଧାରଣ ଲୋକଙ୍କର ସେମାନଙ୍କର ଗବେଷଣା ବିଷୟରେ ଜାଣିବାର ଅଧିକାର ଅଛି । ଗୋଟିଏ ଗଣତାନ୍ତ୍ରିକ ଦେଶରେ ସାଧାରଣ ଲୋକେ ଏହି ଗବେଷଣା ବିଷୟରେ ଜାଣିବା ଉଚିତ । ଏହା ସେମାନଙ୍କୁ ଗବେଷଣା କ୍ଷେତ୍ରରେ ବହୁତ ସାହାଯ୍ୟ କରିବ ।

ମୁଁ ଲଣ୍ଡନରୁ ଫେରିଲି ୧୯୪୯ ମାର୍ଚ୍ଚ ମାସରେ । ଏହି ବୁଦ୍ଧିଜୀବୀଙ୍କର ବକ୍ତୃତା ମୋ ମନରେ ସବୁବେଳେ ଥାଏ । ମୁଁ ସ୍ଥିର କଲି ଯେ ଓଡ଼ିଶାରେ ଜନସାଧାରଣଙ୍କପାଇଁ ଏପରି ଜନପ୍ରିୟ ବିଜ୍ଞାନ ପ୍ରଚାର ହେବା ଉଚିତ । ଏପରି ଭାବନା ନେଇ ମୁଁ ପ୍ରଥମେ ପହଞ୍ଚିଲି ତତ୍‌କାଳୀନ ପ୍ରସିଦ୍ଧ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ଘରେ । ବିଜ୍ଞାନ ପ୍ରଚାର ସମିତି ଓଡ଼ିଶାରେ ଆରମ୍ଭ କରିବା ଉଚିତ ବୋଲି ତାଙ୍କୁ କହିଲି । ସେ ଆଗ୍ରହରେ ଏ କ୍ଷେତ୍ରରେ ମୋ ସହିତ ସହଯୋଗ କରିବାପାଇଁ କେବଳ ରାଜି ହେଲେ ନାହିଁ ବରଂ ଅତ୍ୟନ୍ତ ଉତ୍ସାହିତ ହେଲେ । ତାଙ୍କରି ଘରେ ହିଁ ପ୍ରଥମେ ବିଜ୍ଞାନ ପ୍ରଚାର ସମିତି ଆରମ୍ଭ ହେଲା । ଏହାର ନିୟମାବଳୀ ଅତି ସହଜ । ଦୁଇଜଣ ସେକ୍ରେଟେରୀ ଏହାର ଦାୟିତ୍ୱ ନେବେ । ଏହାର ସଭ୍ୟମାନେ ସେମାନଙ୍କ ଘରେ ଏପରି ବୈଠକ ଡାକିବେ ମାସରେ ଦୁଇ ଥର । ଯେଉଁମାନେ ତିନୋଟି ସଭାରେ ଯୋଗ ଦେବେ ନାହିଁ ସେମାନଙ୍କର ନାମ କଟିଯିବ । ପ୍ରଥମେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନାମ କଟିଗଲା, କାରଣ ସେ ତିନୋଟି ସଭାରେ ଯୋଗଦେଇପାରିଲେ ନାହିଁ । ତାଙ୍କୁ ତା'ପରେ ଆଜୀବନ ସଭ୍ୟ ହିସାବରେ ମନୋନୀତ କରାଯାଇଥିଲା । ଏହାର ପ୍ରଥମ ସେକ୍ରେଟେରୀ ମୁଁ ଥିଲି । ଲେଖା ପରେ ଲେଖା ପଢ଼ାହେଲା – ଖବରକାଗଜରେ ବାହାରିଲା । ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ପ୍ରଥମ ଜନପ୍ରିୟ ବିଜ୍ଞାନ ବହି 'ଚନ୍ଦ୍ର' ବହୁତ ଲୋକପ୍ରିୟ ହେଲା ।

ମୁଁ ଆରମ୍ଭ କଲି, ପ୍ରଥମେ କେତେ ବର୍ଷ ସେକ୍ରେଟେରି ହେଲି ତା'ପରେ ଡକ୍ଟର ଗୋକୁଳାନନ୍ଦ ତାଙ୍କୁ ବଞ୍ଚାଇଛନ୍ତି ଆଜିପର୍ଯ୍ୟନ୍ତ ।

କୌଣସି ବିଷୟ ସୃଷ୍ଟି କରିଦେବା ଯଥେଷ୍ଟ ନୁହେଁ କିନ୍ତୁ ଯେ ତାକୁ ବଞ୍ଚାଇରଖିଛି – ତାକୁ ହୃଷ୍ଟପୁଷ୍ଟ କରି ୬୦ ବର୍ଷରେ ପହଞ୍ଚାଇ ପାରିଛି ସେ ହେଉଛନ୍ତି ଡକ୍ଟର ଗୋକୁଳାନନ୍ଦ ମହାପାତ୍ର । ଏହି ସମିତିପାଇଁ ସରକାରୀ ଜମି ତ ମିଳିଲା ନାହିଁ ତେଣୁ ଗୋକୁଳାନନ୍ଦବାବୁଙ୍କ ଘରେ ଏହା ବହୁ ବର୍ଷ ହେଲା ରହିଛି । ତାଙ୍କଦ୍ୱାରା ବହୁ ଜନପ୍ରିୟ ବିଜ୍ଞାନ ବହି ଲେଖାହୋଇଛି – ହେଉଛି ମଧ । ଓଡ଼ିଶାରେ ସେ ହେଉଛନ୍ତି ଜନପ୍ରିୟ ବିଜ୍ଞାନର ପ୍ରସିଦ୍ଧ ଲେଖକ । ଗ୍ରାମେ ଗ୍ରାମେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବିଜ୍ଞାନ ପ୍ରଚାର ସମିତି ଗଠିତ ହେଲାଣି । ସେମାନଙ୍କର ଲେଖା ଅନେକ ସମୟରେ ମୋ ପାଖକୁ ଆସେ । ଏହା ମୋତେ ବହୁତ ଆନନ୍ଦ ଦିଏ ।

ଏହି ଅବସରରେ ବିଜ୍ଞାନ ପ୍ରଚାର ସମିତିର ବହୁ ସଭ୍ୟ ଏବଂ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କୁ ମୋର ହାର୍ଦ୍ଦିକ ସମ୍ମାନ ଜଣାଉଛି ।

ପ୍ରତିଷ୍ଠାତା ସଦସ୍ୟ ଓ ପ୍ରଥମ ସମ୍ପାଦକ



# ବିଜ୍ଞାନ ପ୍ରଚାର ସମିତି ସହ ମୋର ତ୍ରିଦଶନ୍ଧିର ଅଭିଜ୍ଞତା
# ଏକ ବିହଙ୍ଗାବଲୋକନ

**ଡାଃ ନିତ୍ୟାନନ୍ଦ ସ୍ୱାଇଁ**

*'କଳକାରଖାନାର ଶ୍ରମିକ, କୃଷିକ୍ଷେତ୍ରର କୃଷକ ଏବଂ ପ୍ରତ୍ୟେକ ପରିବାରର ସଦସ୍ୟ ସମସ୍ତଙ୍କ ହିତପାଇଁ ବିଜ୍ଞାନର ସାମାଜିକୀକରଣ ଅପରିହାର୍ଯ୍ୟ ।'*

ଆତ୍ମାରାମ

ଭାରତୀୟ ବୈଜ୍ଞାନିକ ଓ ବିଜ୍ଞାନ ପ୍ରଶାସକ

ବିଜ୍ଞାନ ପ୍ରଚାର ସମିତି ସହ ମୋର ପରିଚୟ ୧୯୭୨ ମସିହାଠାରୁ । ସେହିବର୍ଷ ମୋର ପ୍ରିୟ ସହପାଠୀ ପଦାର୍ଥବିଜ୍ଞାନୀ ପ୍ରଫେସର ଭୀମସେନ ଦାଶ ଥିଲେ ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ । ଭଲ ସଂଗଠକ ଜଣେ ସେ । ତାଙ୍କ ବେଳେ ସମିତି ଖୁବ୍ ସକ୍ରିୟ ହୋଇପଡ଼ିଥିଲା । ସମିତିରେ ବୃଦ୍ଧିପାଇଥିଲା ଚିକିତ୍ସକମାନଙ୍କ ସଂପୃକ୍ତି । ବୋଧହୁଏ ସେହି ବର୍ଷ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅନୁଷ୍ଠିତ ହୋଇଥିଲା ବାର୍ଷିକ ଅଧିବେଶନ । ପ୍ରଫେସର ବାସୁଦେବ କରଙ୍କ ନୂଆ ଫିଆଟ୍ କାର୍‌ରେ କଟକରୁ ଯାଇ ଆମେ ସେହି ଅଧିବେଶନରେ ଯୋଗ ଦେଇଥିଲୁ । ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ୧୯୭୪ ମସିହାରେ ମୁଁ ଯୋଗଦେଲି ବୁର୍ଲାସ୍ଥିତ ମେଡ଼ିକାଲ୍ କଲେଜ୍‌ରେ । ସେଠାରେ ଇଞ୍ଜିନିୟରିଂ କଲେଜର ପଦାର୍ଥ ବିଜ୍ଞାନ ମୁଖ୍ୟ ଥାଆନ୍ତି ପ୍ରଫେସର କୁଳମଣି ସାମଲ । ପ୍ରଫେସର ରେବତୀ ଚରଣ ଦାସ ଥାଆନ୍ତି ରସାୟନ ବିଭାଗ ମୁଖ୍ୟ । ପ୍ରଫେସର ନିମାଇଁ ଚରଣ ପଣ୍ଡା ମେଡ଼ିକାଲ୍ କଲେଜରେ ଯୋଗଦେଲେ ଟିକିଏ ପରେ । ପ୍ରଫେସର ସାମଲଙ୍କ ଉଦ୍ୟମରେ ତାଙ୍କ ବିଭାଗୀୟ ବାସଭବନରେ ଗଠିତ ହେଲା ସମିତିର ବୁର୍ଲା ଶାଖା । ପ୍ରତିଷ୍ଠା-ଅଧିବେଶନରେ ଆମ ଚାରିଜଣଙ୍କ ସମେତ ଡାକ୍ତର ରତ୍ନାକର ଦାସ ଉପସ୍ଥିତ ଥିଲେ । ବୋଧହୁଏ ଉପସ୍ଥିତ ଥିଲେ ଡ. ବିପୁଳକାନ୍ତି ପାତ୍ର । ଶେଷୋକ୍ତ ଦୁଇ ଜଣ ମୋର ସହପାଠୀ ।

ଡ. ସାମଲଙ୍କ ନେତୃତ୍ୱରେ ବୁର୍ଲା ଶାଖା ଖୁବ୍ ସକ୍ରିୟ ହୋଇଉଠିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବୀର ସୁରେନ୍ଦ୍ର ସାଏ ଚିକିତ୍ସା ମହାବିଦ୍ୟାଳୟ, ବୁର୍ଲା ଇଞ୍ଜିନିୟରିଂ କଲେଜର ଅନେକ ଅଧ୍ୟାପକଙ୍କ ସମେତ କେତେକ ଇଞ୍ଜିନିୟର୍ ମଧ ଏହାର ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ଶାଖାଟିର ସାଧାରଣ ଅଧିବେଶନ ଏବଂ ବାର୍ଷିକ ଅଧିବେଶନମାନ ନିୟମିତ ଅନୁଷ୍ଠିତ ହେଉଥିଲା । ମୁଁ ବୁର୍ଲାରୁ ବଦଳିହୋଇ ଆସିଲି ୧୯୭୯ ମସିହାରେ । ତା' ପରବର୍ଷ ସମିତି ଆନୁକୂଲ୍ୟରେ ପ୍ରକାଶ ପାଇଥିଲା 'ଯେଉଁ ରୋଗର ନାଁ ଶୁଣିଲେ ଡର ମାଡ଼େ' ଶୀର୍ଷକ ବୁର୍ଲା ଶାଖାର ପ୍ରଥମ ପୁସ୍ତକ ।

କଟକର ରସାୟନ ବିଜ୍ଞାନୀ ଡ. ଗଙ୍ଗାଧର ସାହୁ ଏବଂ ମୁଁ ୧୯୮୦ ମସିହାରେ ସମିତିର ସମ୍ପାଦକରୂପେ ନିର୍ବାଚିତ ହେଲୁ । କିନ୍ତୁ କିଛି ମାସ ପରେ ମୁଁ ବର୍ଷକପାଇଁ ହାଇଦ୍ରାବାଦ ଚାଲିଗଲି ପଢ଼ିବାପାଇଁ । ଫେରିଲି ୧୯୮୧ ରେ । ପୁଣି ଥରେ ସମିତି ସମ୍ପାଦକତ୍ୱର ଦାୟିତ୍ୱ ପଡ଼ିଲା ନିକୁଞ୍ଜବିହାରୀ ମିଶ୍ର ଓ ମୋ ଉପରେ (୧୯୮୪-୧୯୮୬) । ଏହା ପରଠାରୁ ସମିତି ସହ ମୋ'ର ଆଉ ବିଶେଷ ବିଚ୍ଛେଦ ଘଟି ନାହିଁ । ବୁର୍ଲାରେ ବୁର୍ଲା ଶାଖାସହ ଏବଂ ବ୍ରହ୍ମପୁରରେ ସମିତିର ବ୍ରହ୍ମପୁର ଶାଖାସହ ମୁଁ ବେଶ୍ ସଂପୃକ୍ତ ରହି ଆସିଥିଲି । ଛୁଟିରେ କଟକ ଆସିଲେ ସମିତିର ଅଧିବେଶନରେ ନିୟମିତ ଯୋଗ ଦେଉଥିଲି । ଏ ଯାଏଁ ମଧ ମୋ'ର ସଂପୃକ୍ତି ଅବ୍ୟାହତ ରହିଆସିଛି ।

ବୁର୍ଲାଶାଖାର ଏକ ସାଧାରଣ ଅଧିବେଶନରେ ସଭ୍ୟମାନଙ୍କ ଆଡୁ ପ୍ରଶ୍ନ ଉଠିଥିଲା – 'ଭୂମିଷ୍ଠ ହୋଇପଡ଼ିବା ମାତ୍ରେ ଶିଶୁଟି କାନ୍ଦିଥାଏ କାହିଁକି ?' ଏହାର ଉତ୍ତର ଅନୁସନ୍ଧାନ କରି ମୁଁ ଲେଖିଥିଲି ଏକ ଦୀର୍ଘ ପ୍ରବନ୍ଧ । ପ୍ରବନ୍ଧଟିର ଶୀର୍ଷକ

ଥିଲା – 'ପ୍ରଥମ ପ୍ରଶ୍ୱାସ'। ବିଜ୍ଞାନ ପ୍ରଚାର ସମିତି ଅଧିବେଶନରେ ତାହା ଥିଲା ମୁଁ ପାଠ କରିଥିବା ସର୍ବପ୍ରଥମ ପ୍ରବନ୍ଧ। ପରେ ପ୍ରବନ୍ଧଟି 'ସମ୍ବାଦ' ଖବରକାଗଜ ପୃଷ୍ଠାରେ ପ୍ରକାଶ ପାଇଥିଲା। ଅବଶ୍ୟ ମୁଁ ଡାକ୍ତର ହେବା ବର୍ଷ (୧୯୬୯) 'ପୋଲିଓ ରୋଗ' ଶୀର୍ଷକ ମୋର ପ୍ରବନ୍ଧ ପ୍ରକାଶିତ ହୋଇଥିଲା ସେହି ସମୟରେ କଟକରୁ ବାହାରୁଥିବା 'କଳିଙ୍ଗ' ନାମକ ସମ୍ବାଦପତ୍ରରେ।

ସମିତି ସହ ମୋର ସମ୍ବନ୍ଧ ତିନି ଦଶନ୍ଧିରୁ ଉର୍ଦ୍ଧ୍ୱ। ତେଣୁ ସମିତି ସଂପର୍କରେ ସ୍ମୃତିଚାରଣ କଲାବେଳେ ଅନେକ ଅନୁଭୂତି ମୋ ମନରେ ଏକାବେଳକେ ମୁଣ୍ଡ ଟେକୁଛନ୍ତି। କେତେକ ଅନୁଭୂତି ବେଶ୍ ମଧୁର; ସୁତରାଂ ଉଲ୍ଲେଖଯୋଗ୍ୟ। ଅନୁଭବରେ ସର୍ବାଗ୍ରେ ଉଭା ହୋଇପଡ଼ନ୍ତି ସମିତିର ଅନ୍ୟତମ ସ୍ରଷ୍ଟା ଡ. ଗୋକୁଳାନନ୍ଦ ମହାପାତ୍ର। ତାଙ୍କର ନମନୀୟ ବ୍ୟକ୍ତିତ୍ୱ ଯୋଗୁଁ ଯେ ସମିତି ଦୀର୍ଘଜୀବନ ଉପଭୋଗ କରିବା ନିମନ୍ତେ ସମର୍ଥ ହୋଇଛି, ଏହା ମୋର ଦୃଢ଼ମତ। ସମିତି ଅଧିବେଶନରେ ଅତି ଧୀରସ୍ୱରରେ ମତ ବ୍ୟକ୍ତ କରିବା ତାଙ୍କର ବୈଶିଷ୍ଟ୍ୟ। କୌଣସି ସଭ୍ୟଙ୍କ ମତକୁ ଦୃଢ଼ଭାବରେ ବିରୋଧ କରିବା ତାଙ୍କ ଚରିତ୍ରର ପରିପନ୍ଥୀ। କାହା ବିରୋଧରେ କୌଣସି ମନ୍ତବ୍ୟ ଦେବା ମୁଁ କେବେବି ତାଙ୍କ ତୁଣ୍ଡରୁ ଶୁଣିନି; ଆଗରେ ନୁହେଁ କି ପଛରେ ନୁହେଁ। ନିଜର କର୍ତ୍ତୃତ୍ୱ ଜାହିର କରିବାର ବ୍ୟକ୍ତିତ୍ୱ ହୋଇ ନ ଥିବାରୁ ହିଁ ତାଙ୍କ ଅଭିଭାବକତ୍ୱରେ ସମିତି ହୋଇପାରିଛି ଦୀର୍ଘଜୀବୀ। ସମିତିର ପାଣ୍ଠି ବୃଦ୍ଧି କରିବାରେ ତାଙ୍କର ଆନ୍ତରିକ ଉଦ୍ୟମ ପ୍ରଶଂସନୀୟ। ଏହି ପାଣ୍ଠିରୁ କାଣି କଉଡ଼ିଟିଏ ଯେପରି ଅପବ୍ୟୟ ନ ହୁଏ, ସେଥିପ୍ରତି ସେ ରହିଆସିଛନ୍ତି ଅତ୍ୟନ୍ତ ସଚେତନ। ଲେଖାଲେଖି କରିବା ନିମନ୍ତେ ସଭ୍ୟମାନଙ୍କୁ ସର୍ବଦା ପ୍ରୋତ୍ସାହନ ଦେବା ତାଙ୍କର ଅନ୍ୟତମ ଚାରିତ୍ରିକ ମହାନତା। ନିଜ ବାସଭବନ ପରିସରରେ କୋଠରିର ବ୍ୟବସ୍ଥା କରି ନ ଥିଲେ ସମିତିର ଅଧିବେଶନ କରିବାପାଇଁ ଆମକୁ ବାରଦ୍ୱାର ଶୁଣ୍ଢିପିଣ୍ଡା ହେବାକୁ ପଡ଼ିଥାନ୍ତା।

ସମସ୍ତଙ୍କୁ ମନେଇ କାର୍ଯ୍ୟ କରିବାରେ ଭୀମସେନ ଦାଶ ଥିଲେ ଖୁବ୍ ପାରଙ୍ଗମ। ପରବର୍ତ୍ତୀ ଅବସ୍ଥାରେ ସମିତିସହ ତାଙ୍କର ସଂପର୍କ ଶିଥିଳ ହୋଇ ଆସିଥିଲେ ମଧ ସମିତି ତାଙ୍କ ସହଯୋଗ ଓ ସାହାଯ୍ୟରୁ କେବେବି ବଞ୍ଚିତ ହୋଇନି।

ମନେ ପଡୁଛନ୍ତି ମୋର ଅଗ୍ରଜ ପ୍ରତିମ ଡ. ଲକ୍ଷ୍ମୀକାନ୍ତ ସାହୁ। ଜଣେ ଡାକ୍ତର ହୋଇ ମଧ 'ବିଜ୍ଞାନାଲୋକ' ପତ୍ରିକାକୁ ଲୋକାଭିମୁଖୀ କରାଇବାରେ ତାଙ୍କର ଅବଦାନ ଥିଲା ଅନନ୍ୟ। ସେ ନିଜେ ପତ୍ରିକାକୁ ଗୁଡ଼େଇ, ସେଥିରେ ଗ୍ରାହକଙ୍କ ଠିକଣା ଲେଖି କଲେଜଛକ ପୋଷ୍ଟ ଅଫିସ୍‌ରେ ଦାଖଲ କରୁଥିବାର ମୋ ଆଖି ଦେଖିଆସିଛି ମାସ ମାସ ଧରି।

ସ୍ମୃତିକୁ ଆସି ଯାଉଛନ୍ତି ନିକୁଞ୍ଜବିହାରୀ ମିଶ୍ର। ତାଙ୍କ ସହିତ ସମ୍ପାଦକ ଭାବରେ କାର୍ଯ୍ୟ ନିର୍ବାହ କରିଛି ମୁଁ। ସେ କୋଷାଧକ୍ଷ ରହିଥିବାବେଳେ ମଧ ମୁଁ ରହିଆସିଥିଲି ସମ୍ପାଦକ। ଜଣେ କର୍ତ୍ତବ୍ୟନିଷ୍ଠ ତଥା ସାଲିସବିହୀନ ଚରିତ୍ର ହୋଇ ମଧ ସେ ଥିଲେ ସମସ୍ତଙ୍କର ପ୍ରଶଂସାଭାଜନ। ତାଙ୍କର ଅକାଳ ତିରୋଧାନ ମୋର ଏକ ବ୍ୟକ୍ତିଗତ ଅପୂରଣୀୟ କ୍ଷତି।

ମନେ ପଡୁଛି ସ୍ୱର୍ଗତ ଡ. ବନମାଳୀ ମହାନ୍ତିଙ୍କ ବାସ ଭବନରେ ଅନୁଷ୍ଠିତ ହୋଇଥିବା ଏକ ଅଧିବେଶନର କଥା। ସେହି ଅଧିବେଶନଟିରେ ଥିଲା ସମିତିର ଅନ୍ୟତମ ପ୍ରତିଷ୍ଠାତା ସଭ୍ୟ ଡ. ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କର ଅନ୍ତିମ ଯୋଗଦାନ। ସେଥିରେ ସେ ଉପସ୍ଥାପନା କରିଥିଲେ ସମିତି ଅଧିବେଶନ ପାଇଁ ତାଙ୍କର ଅନ୍ତିମ ପ୍ରବନ୍ଧ। ଅସୁସ୍ଥତା କାରଣରୁ ସେ ଏହାକୁ ନିଜେ ପଢ଼ିପାରି ନ ଥିଲେ ଓ ତାଙ୍କର ଅନୁମତି କ୍ରମେ ମୁଁ ସେହି ପ୍ରବନ୍ଧଟିକୁ ପାଠ କରିବାର ବିରଳ ସୌଭାଗ୍ୟ ଲାଭ କରିଥିଲି। ଡ. ପଟ୍ଟନାୟକ ବୁର୍ଲାରେ ଥାଇ ପରଲୋକ ଯାତ୍ରୀ ହେଲେ। ତାଙ୍କ ମରଶରୀର କଟକ ଆସିବା ପରେ ତାଙ୍କର ଶେଷଦର୍ଶନ କରି ସମ୍ମାନ ଜ୍ଞାପନ କରିଥିଲି ମୁଁ।

ସ୍ମୃତିପଟରେ ଉଭା ହୋଇପଡୁଛନ୍ତି ଦିବଂଗତ ଡ. ବିଶ୍ୱନାଥ ସାହୁ। କୃଷିବିଜ୍ଞାନୀ ଡ. ସାହୁ ଭୁବନେଶ୍ୱରରେ ରହିଆସୁଥିଲେ ମଧ କଟକକୁ ଆସି ସମିତିର ପ୍ରାୟ ସବୁ ଅଧିବେଶନରେ ଯୋଗ ଦେଉଥିଲେ। ଏପରିକି କନ୍ଦରପୁରସ୍ଥିତ କଲେଜରେ ଅଧକ୍ଷ ରହି ମଧ ରେଭେନ୍ସା କଲେଜରେ ପହଞ୍ଚି ଅଧିବେଶନରେ ପ୍ରବନ୍ଧପାଠ କରୁଥିଲେ। ପୁଣି ନିୟମିତ ଭାବରେ ପଢୁଥିଲେ କୃଷିବିଜ୍ଞାନଭିତ୍ତିକ ପ୍ରବନ୍ଧମାନ। ପ୍ରତିବର୍ଷ ଗ୍ରୀଷ୍ମଛୁଟିରେ ଏକ ଅଧିବେଶନ ଅନୁଷ୍ଠିତ କରାଉଥିଲେ ତାଙ୍କ ଭୁବନେଶ୍ୱରସ୍ଥିତ ବାସଭବନରେ। ସେତେବେଳେ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡ

ଥିଲା ସୂଚନାଭବନ ନିକଟରେ । ଆମ୍ଭେମାନେ ବସ୍ ଯୋଗେ କଟକରୁ ଯାଇ ଖରାଦିନର ଉଦୁଉଦିଆ ଦି'ପହରେ ସେଠାରେ ଓହ୍ଲାଉଥିଲୁ । ସେତେବେଳକୁ ଡ. ସାହୁ ମୁଣ୍ଡରେ ଓଦାଗାମୁଛା ପକେଇ ଆମକୁ ପାଛୋଟି ନେବାପାଇଁ ସେଠାରେ ଟହଲ ମାରୁଥିଲେ । ତାଙ୍କ ଘରେ ଆପ୍ୟାୟିତ କରୁଥିଲେ ନିଜ ଗଛରୁ ତୋଳା ହୋଇଥିବା ବେଲର ସରବତ ପିଆଇ ଏବଂ ଓଡ଼ିଆ ପରିବାରର ନାନାପ୍ରକାର ପିଠା ଖୁଆଇ ।

ମଝିରେ ମଝିରେ ସଭ୍ୟମାନେ ନିଜ ଘରେ ସମିତିର ଅଧିବେଶନ କରାଇବାପାଇଁ ନିମନ୍ତ୍ରଣ ଜଣାଇଥାନ୍ତି ଓ ପେଟପୂରା ଖୁଆଇ ସଭ୍ୟମାନଙ୍କୁ ତୋଷ କରିଥାନ୍ତି । ଏ ସଂପର୍କରେ ମନେପଡୁଛି ବିଜ୍ଞାନ ପ୍ରତି ମୋ' ସାନଝିଅ ମୁନ୍‌ମୁନ୍‌ର ଶାଣିତ ବ୍ୟଙ୍ଗ । ଅଧିବେଶନ ହେଉଥାଏ ଆମ ଘରେ, ସି.ଡି.ଏ.ରେ । ଆଲୋଚନାପାଇଁ ବିଷୟ ରଖାଯାଇଥାଏ 'ଶିଶୁ ସାହିତ୍ୟରେ ବିଜ୍ଞାନ' । ମୁଖ୍ୟବକ୍ତା ଥାଆନ୍ତି ବିଶିଷ୍ଟ ଶିଶୁ ସାହିତ୍ୟିକ ଡ. ମହେଶ୍ୱର ମହାନ୍ତି । ମୋ'ର ଶିକ୍ଷକ ଡାକ୍ତର ନିମାଇଁ ଚରଣ ପଣ୍ଡା ମହୋଦୟଙ୍କୁ ଉଦ୍ଦେଶ୍ୟ କରି ମୁନ୍‌ମୁନ୍ ମନ୍ତବ୍ୟ ଦେଇଥିଲା, ''ଅଜାମାନେ ତ ଖୁବ୍ ବିଜ୍ଞାନ କରୁଛନ୍ତି । ସେମାନଙ୍କ ବିଜ୍ଞାନ-ଜ୍ଞାନକୁ ଖଟେଇ ମୋ' ଝିଅ ପୁତୁଲକୁ ଖୁଆଇଦେଇ ପାରନ୍ତୁ ତ ଦେଖିବି, ଲୋକପ୍ରିୟ ବିଜ୍ଞାନର କରାମତି !''

ନିକଟରେ ଆମ ଗହଣରୁ ଚିରବିଦାୟ ନେଇସାରିଛନ୍ତି ଡ. ହରିହର ପଟ୍ଟନାୟକ ଓ ଡ. ଗଦାଧର ମିଶ୍ର । ସେ ଦୁହେଁ ଥିଲେ ସମିତି ପରିବାରର ବିବେକ । 'ମୁଁ ଜାଣିନି' ସ୍ୱୀକାର କରିବା ଥିଲା ସେ ଦୁହିଁଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ । ସେମାନଙ୍କ ଲେଖାରେ କୌଣସି ତ୍ରୁଟି ଦର୍ଶେଇଲେ ଆତ୍ମପକ୍ଷ ସମର୍ଥନ କରି ଯୁକ୍ତି ଦେଖେଇବା ସେମାନଙ୍କ ଜାତକରେ ନ ଥିଲା ।

ଡ. ବସନ୍ତ କୁମାର ବେହୁରାଙ୍କ ପ୍ରବନ୍ଧରେ ଶବ୍ଦ ନିର୍ବାଚନ ଓ ଶବ୍ଦ ସଂଯୋଜନା ଏବଂ ବିଜ୍ଞାନବିଷୟକ ଲୋକପ୍ରିୟ ବକ୍ତୃତା ଦେବାର ଶୈଳୀ ମୋ ପାଇଁ ରହିଆସିଛି ଖୁବ୍ ଆକର୍ଷଣୀୟ ।

ସ୍ମୃତିରେ ଉଙ୍କିମାରୁଛି ବିଗତ ବର୍ଷଗୁଡ଼ିକର ବାର୍ଷିକ ଅଧିବେଶନର ଚିତ୍ର । ଅର୍ଥାଭାବ ଯୋଗୁଁ ବ୍ୟାନର୍‌ଟିଏ କରାଯାଇପାରୁ ନ ଥିଲା । ତେଣୁ ବାର୍ଷିକ ଅଧିବେଶନର ସଂଖ୍ୟା, ସଭାପତିଙ୍କ ନାମ ଓ ସମ୍ମାନର ବିଷୟକୁ ଲେଖିବାପାଇଁ ପଡୁଥିଲା କଳାପଟାରେ, ରଙ୍ଗ ଚକ୍‌ରେ । ଫଟୋ ଉଠାଯିବା ଥିଲା ସ୍ୱପ୍ନ । ସମ୍ମାନ ଅନୁଷ୍ଠିତ ହେବା ଥିଲା ସ୍ୱାଭାବିକ ଚଳଣି । ଅଧିବେଶନ ଚାଲୁଥିଲା ସକାଳ ନଅ ଦଶରୁ ସନ୍ଧ୍ୟା ପର୍ଯ୍ୟନ୍ତ । ଭୁବନେଶ୍ୱର, ବୁର୍ଲା ଓ ବ୍ରହ୍ମପୁର ଶାଖାରୁ ପ୍ରତିନିଧିମାନେ ଆସି ଏଥିରେ ଯୋଗ ଦେଉଥିଲେ, ପ୍ରବନ୍ଧ ପଢୁଥିଲେ । ଯେଉଁ ସଭ୍ୟମାନେ ସାଧାରଣ ଅଧିବେଶନଗୁଡ଼ିକରେ ଯୋଗ ଦେଇପାରୁ ନ ଥିଲେ, ସେମାନେ ପ୍ରାୟତଃ ଆସି ପହଞ୍ଚୁଥିଲେ ବାର୍ଷିକ ଅଧିବେଶନରେ । ବର୍ଷକ ପରେ ପୁନର୍ବାର ସେମାନଙ୍କ ସହ ସାକ୍ଷାତ୍ ହେବା ଜାଗରିତ କରି ପକାଉଥିଲା ଅତୀତର ଆବେଗମୟ ସ୍ମୃତି ।

ବୟସରେ ବରିଷ୍ଠ ଓ ଜ୍ଞାନରେ ଗରିଷ୍ଠ ସଭ୍ୟମାନଙ୍କ ଉପସ୍ଥିତିରେ ପ୍ରବନ୍ଧ ପଢ଼ିବାପାଇଁ ଖୁବ୍ ଡର ମାଡୁଥିଲା । କନିଷ୍ଠ ସଭ୍ୟମାନଙ୍କର ଲେଖାକୁ ବାହାବା ଦେବାରେ ସେମାନେ ଥିଲେ ଅତି ଉଦାର । ସେମାନେ ତ୍ରୁଟି ଦର୍ଶାଇ ଦେଉଥିଲେ ସିନା, ଦୋଷଦର୍ଶୀ ନ ଥିଲେ । ସମାଲୋଚନା କରିବାର ପ୍ରଶ୍ନ ହିଁ ନ ଥିଲା ସେମାନଙ୍କ ଚରିତ୍ରରେ । ପ୍ରବନ୍ଧଟି ଲୋକପ୍ରିୟ ଶୈଳୀରେ ଲେଖିବା ଥିଲା ଏକମାତ୍ର ଲକ୍ଷ୍ୟ । ତଥ୍ୟବହୁଳ ଲେଖା ନ ଲେଖିବାପାଇଁ ସେମାନେ ବାରମ୍ବାର ତାଗିଦ୍ କରିଦେଉଥିଲେ । ବାସ୍ତବରେ ସମିତି ଥିଲା ଆମଭଳି ଅପରିପକ୍ୱ ଲେଖକମାନଙ୍କପାଇଁ ଏକ ପାଠଶାଳା । 'ଅପରାହ୍ନ' ନ ଲେଖି 'ଅପରାହ୍ଣ' ଲେଖିବା ସେଇଠି ଶିଖିଛି ମୁଁ । 'ମାଧ୍ୟାକର୍ଷଣ ଶକ୍ତି' ବଦଳରେ 'ମାଧ୍ୟାକର୍ଷଣ ବଳ' ଲେଖିବା, 'ଉତ୍ତାପ', 'ତାପ' ଓ 'ତାପମାତ୍ରା' ଶବ୍ଦତ୍ରୟର ଯଥାର୍ଥ ପ୍ରୟୋଗ କରିବା, 'ଭାରି ଓ 'ଭାରୀ', 'ଖୁସି ଓ 'ଖୁସୀ', 'ବେଶି' ଓ 'ବେଶୀ' ଇତ୍ୟାଦି ଶବ୍ଦର ପାର୍ଥକ୍ୟ ସମିତି ହିଁ ଶିଖେଇଛି ମୋତେ । ମୋର ବର୍ଣ୍ଣାଶୁଦ୍ଧି ଏବଂ ପରିଭାଷା ପ୍ରୟୋଗରେ କିଞ୍ଚିତ୍ ଉନ୍ନତି କରାଇବାରେ ସମିତି ହିଁ ମୁଖ୍ୟତଃ ଦାୟୀ ।

ସମିତିପାଇଁ ପ୍ରବନ୍ଧ ଲେଖିବାଯୋଗୁଁ ଅନ୍ୟମାନଙ୍କ ଲେଖା ଓ ବହିପତ୍ର ପଢ଼ିବାପ୍ରତି ରୁଚି ବଢ଼ିଛି ମୋର । ବିଜ୍ଞାନର ବିବିଧ ଶାଖାରେ କାମଚଳା ଧାରଣା ମଧ ଅର୍ଜନ କରିପାରିଛି ମୁଁ । ସମିତି ପରିବାରଭୁକ୍ତ ହେବାଫଳରେ ଶିଖିପାରିଛି ପ୍ରୁଫ୍ ସଂଶୋଧନ ତଥା ପତ୍ରିକା ଏବଂ ପୁସ୍ତକ ସଂପାଦନାର ବର୍ଣ୍ଣମାଳା ।

ବିଦ୍ୟାଳୟ କାର୍ଯ୍ୟକ୍ରମରେ ଯୋଗଦେବା ଅବସରରେ ବିଜ୍ଞାନ ବିଷୟକ ଲୋକପ୍ରିୟ ବକ୍ତୃତା ଦେବାର କଳା ମଧ୍ୟ ମୋତେ ବତେଇଛି ସମିତି । ପ୍ରକୃତରେ ଏହି କାର୍ଯ୍ୟକ୍ରମଟି ମୋ ପାଇଁ ରହିଆସିଛି ଏକ ଆହ୍ୱାନରୂପେ । ବିଭିନ୍ନ ଖାଦ୍ୟଦ୍ରବ୍ୟକୁ କୃତ୍ରିମ ରଙ୍ଗରେ ରଙ୍ଗେଇ ଏବଂ ଖାଦ୍ୟରେ ନିଷିଦ୍ଧଦ୍ରବ୍ୟମାନ ମିଶେଇ ଅପମିଶ୍ରିତ ଖାଦ୍ୟ ଚିହ୍ନଟ କରିବାର ପରୀକ୍ଷାମାନ ମୁଁ ଦେଖେଇଛି ସ୍କୁଲ୍ ଛାତ୍ରଛାତ୍ରୀମାନଙ୍କୁ । ମେଡ଼ିକାଲ କଲେଜର ଆନାଟୋମି ବିଭାଗରୁ ମଲା ମଣିଷର ହୃତ୍‌ପିଣ୍ଡ, ମସ୍ତିଷ୍କ, ଫୁସ୍‌ଫୁସ୍, ବୃକ୍କ, ପାକସ୍ଥଳୀ ଓ ଅନ୍ତନଳୀ ଇତ୍ୟାଦିକୁ ବାଲ୍‌ଟିରେ ନେଇ ସେମାନଙ୍କୁ ଦେଖେଇବାବେଳେ ସେମାନଙ୍କର ଚକିତ ଚାହାଣି ଦେଖିବାର ସୁଯୋଗ ଲାଭ କରିଛି ମୁଁ । ଅସ୍ତରଙ୍ଗ ହାଇସ୍କୁଲ୍‌କୁ ଯିବାବେଳେ ବାଟରେ ଗାଡ଼ି ବାରମ୍ବାର ଖରାପ ହେବା ସତ୍ତ୍ୱେ ସେଠାରେ ବିଳମ୍ବରେ ପହଞ୍ଚି ଛାତ୍ରଛାତ୍ରୀମାନଙ୍କ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଲୋହିତ ରକ୍ତକୋଷିକା ଓ ଶ୍ୱେତ ରକ୍ତକୋଷିକା ଦେଖେଇବାର ଘଟଣା କ'ଣ ମନରୁ କେବେ ପାସୋର ଯାଇପାରେ ? ସେମାନଙ୍କ ହାତ ଆଙ୍ଗୁଠିକୁ ଛୁଞ୍ଚିରେ ଫୁଟେଇ ରକ୍ତରେ ହେମୋଗ୍ଲୋବିନ୍‌ର ମାତ୍ରା ଓ ରକ୍ତର ଗ୍ରୁପ୍ ନିର୍ଦ୍ଧାରଣ କରିବାର ଘଟଣାମାନ ମନରୁ ଲିଭିପାରୁ ନାହିଁ । ଡିଆସିଲି କାଠି ଓ ପ୍ଲାଷ୍ଟିକ୍ ଦଉଡ଼ିରେ ଡି.ଏନ୍.ଏ. ଅଣୁର ମଡେଲ୍ ତିଆରି କରି କୁଜଙ୍ଗ ବାଳିକା ଉଚ୍ଚ ବିଦ୍ୟାଳୟରେ ଡି.ଏନ୍.ଏ. ଅଣୁର ଗଠନ ଓ କାର୍ଯ୍ୟ ବୁଝେଇବା କଥା ମନେ ପଡ଼ିଲେ ଏବେ ଆଉ ବିଶ୍ୱାସ କରିହେଉନି । ଖାଦ୍ୟଦ୍ରବ୍ୟରେ ରହିଥିବା ଖାଦ୍ୟ ଉପାଦାନମାନ କିପରି ନଷ୍ଟ ନ ହେବ, ତାହା ପରୀକ୍ଷା କରି ବୁଝେଇଦେବା ବେଳେ ଆତ୍ମବିସ୍ମୃତ ହୋଇପଡ଼ିବାର ଅଭିଜ୍ଞତା ନିଆରା । ଏପରିକି ପ୍ରଫେସର ପତିତପାବନ ମିଶ୍ର ବିଭିନ୍ନ ଉପକରଣମାନ ଗାଡ଼ିରେ ଲଦି କମଳାଡିହ ହାଇସ୍କୁଲ୍‌ରେ ପ୍ରଦର୍ଶନ କରିଥିଲେ 'ବିଦ୍ୟୁତ୍‌ଶକ୍ତି ଜାତ ହୁଏ କିପରି'ର ପରୀକ୍ଷାମାନ ।

ବିଦ୍ୟାଳୟ ବିଜ୍ଞାନ କାର୍ଯ୍ୟକ୍ରମରେ ଆମେ ଯେଉଁସବୁ ସ୍କୁଲ୍‌କୁ ଯାଇଥିଲୁ, କେଉଁଠାରେ ଅନାଦର ପାଇ ନାହୁଁ । ସ୍କୁଲ୍‌ର ଶିକ୍ଷକ ଓ ସ୍ଥାନୀୟ ଅଭିଭାବକମାନେ ଖୁବ୍ ଆଗ୍ରହର ସହ ଆମ ଖିଆପିଆର ତତ୍ତ୍ୱ ନେଇଥାନ୍ତି । ଏପରିକି କେତେକ ସ୍କୁଲ୍‌ରେ ଏନ୍.ସି.ସି. ପିଲା ସେମାନଙ୍କ ପାରମ୍ପରିକ ଢଙ୍ଗରେ ଆମକୁ ସମ୍ମାନ ଜଣେଇଥାନ୍ତି । ଖୋଳକରତାଳ ବଜେଇ ଆମକୁ ପାଛୋଟି ନେଇଥାନ୍ତି ଆଖପାଖ ଗାଆଁର ମୁରବୀ ସ୍ଥାନୀୟ ବ୍ୟକ୍ତିମାନେ ।

ସାମାଜିକତା ରହିଆସିଥିଲା ସମିତିର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ବଣକୁ ନ ଯାଇ ବଣଭୋଜି କରିବାଥିଲା ଏକ ନିୟମିତ ବାର୍ଷିକ ବିଧି । ଏଥିପାଇଁ କଟକ ମେଡ଼ିକାଲ୍ କଲେଜ୍‌ର ବସ୍ ଥିଲା ଆମର ବାହନ ଏବଂ ଡ୍ରାଇଭର୍ ଇଜ୍ଜିରାଏଲ୍ ଥିଲେ ବାହକ । ଡିପାର୍ଟମେଣ୍ଟର କର୍ମଚାରୀମାନେ ପିକ୍‌ନିକ୍ କରିବାକୁ ଯିବେ' ବୋଲି ଉଲ୍ଲେଖକରି ଡ.ବାସୁଦେବ କର କଲେଜର ଅଧ୍ୟକ୍ଷଙ୍କୁ ଦରଖାସ୍ତ ଦେଉଥିଲେ ଓ ଏହା 'ମିଛ' ବୋଲି ଜାଣି ମଧ୍ୟ ଉଦାର ହୃଦୟରେ ବସ୍‌କୁ ନେବାପାଇଁ ଅନୁମତି ଦେଇଦେଉଥିଲେ ଅଧ୍ୟକ୍ଷ ମହାଶୟ । ପିକ୍‌ନିକ୍ ସ୍ଥଳକୁ ନିକଟସ୍ଥ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ଡକେଇ ବିଜ୍ଞାନ ବିଷୟକ ବକ୍ତୃତାମାନ ଆୟୋଜିତ ହେଉଥିଲା । ଭୁବନେଶ୍ୱରର ନନ୍ଦନକାନନ, ବୋଟାନିକାଲ ଗାର୍ଡନ୍, ଧବଳେଶ୍ୱରସ୍ଥିତ ଡାକବଙ୍ଗଳା, ଚଣ୍ଡିଖୋଲରେ ବାବାଙ୍କ ଆଶ୍ରମ ଇତ୍ୟାଦିରେ ପିକ୍‌ନିକ୍ ଓ ବକ୍ତୃତା କାର୍ଯ୍ୟକ୍ରମ କରାଯାଇଥିବାର ମନେପଡୁଛି । ପିକ୍‌ନିକ୍ ମଧ୍ୟ ହୋଇଆସୁଛି ମର୍କତନଗରସ୍ଥିତ ବିଜୁପଟ୍ଟନାୟକ ପାର୍କରେ ।

ବିଜ୍ଞାନ ପ୍ରଚାର ସମିତି କ'ଣ ତା'ର ଉପଯୋଗିତା ହରେଇ ବସୁଛି ? ପ୍ରବନ୍ଧ ପାଠ, ପତ୍ରିକା ଓ ପୁସ୍ତକ ପ୍ରକାଶନ ଏବଂ ବକ୍ତୃତା ମାଧ୍ୟମରେ ବିଜ୍ଞାନକୁ ଜନପ୍ରିୟ କରାଇବାର ଲକ୍ଷ୍ୟନେଇ ୬୦ ବର୍ଷ ତଳେ ୧୯୪୯ ମସିହାରେ ସମିତି ଗଠିତ ହୋଇଥିଲା । ବିଜ୍ଞାନ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଥିବା ଓଡ଼ିଶାର ବହୁ ବ୍ୟକ୍ତି ସମିତିର ସଭ୍ୟଶ୍ରେଣୀଭୁକ୍ତ ହୋଇ ସମିତିକୁ ସମୃଦ୍ଧ କରିଥିଲେ । ଜନପ୍ରିୟ ବିଜ୍ଞାନ ଲେଖକ ସୃଷ୍ଟି କରିବାରେ ଏହାର ଅବଦାନ ଥିଲା ଅନସ୍ୱୀକାର୍ଯ୍ୟ । କିନ୍ତୁ ଏବେ ବିଜ୍ଞାନ ପ୍ରଚାର ସମିତିରେ ନାଁ ନ ଲେଖେଇ ମଧ୍ୟ ଅନେକ ଲେଖକ ବିଜ୍ଞାନ ଶାଖାରେ ନିୟମିତ ଲେଖନୀ ଚାଳନା କରିଆସୁଛନ୍ତି । ସେମାନଙ୍କ ଲେଖାମାନ ନିୟମିତ ଭାବରେ ବିଭିନ୍ନ ପତ୍ରପତ୍ରିକା ଓ ଖବରକାଗଜରେ ପ୍ରକାଶିତ ହେଉଛି । ପ୍ରକାଶିତ ହେଉଛି ପୁସ୍ତକ ଆକାରରେ । ଉଚ୍ଚ ପ୍ରଶଂସିତ ହେଉଛି ମଧ୍ୟ । ତେଣୁ ବିଜ୍ଞାନ ପ୍ରଚାର ସମିତି ଏକ ବିଜ୍ଞାନ ଲେଖକ ପ୍ରଶିକ୍ଷଣ କେନ୍ଦ୍ରରୂପେ ଆଉ ଅପରିହାର୍ଯ୍ୟ

ବିବେଚିତ ହେଉ ନାହିଁ । ଫଳରେ ବିଜ୍ଞାନୀ ଯୁବଗୋଷ୍ଠୀ ଏହାର ସଭ୍ୟଶ୍ରେଣୀଭୁକ୍ତ ହେବାପାଇଁ ବିଶେଷ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ସଂପ୍ରତି ଅଧିବେଶନରେ ନିୟମିତ ଭାବରେ ଯୋଗ ଦେଉଥିବା ପାଖାପାଖି ୯୦ ପ୍ରତିଶତ ସଭ୍ୟଙ୍କ ହାରାହାରି ବୟସ ପ୍ରାୟ ୬୫ । ଏମାନେ ନିଜ ଜୀବନରେ ଏକ ସ୍ଥାୟୀ ପରିଚିତି ପାଇସାରିଥିବାରୁ ସମିତି ସେମାନଙ୍କ ପରିଚିତିରେ ଅଧିକ କିଛି ଉନ୍ନତି ଆଣିପାରିବାର ହୁଏତ ସମ୍ଭାବନା ନାହିଁ । ତାହାଛଡ଼ା ଜୀବନ ଶୈଳୀରେ ପରିବର୍ତ୍ତନ ଯୋଗୁଁ ସମିତିର ଅଧିବେଶନରେ ଯୋଗଦେବାର ଆବଶ୍ୟକତା ଅନୁଭବ କରିପାରୁ ନ ଥିବେ ସେମାନେ । ପରିବର୍ତ୍ତିତ ପାରିବାରିକ ପରିସ୍ଥିତି ବି ବହୁସଭ୍ୟଙ୍କ ଯୋଗଦାନରେ ଅନ୍ତରାୟ ହେଉଥିବ । ଅଧିବେଶନରେ ଯୋଗଦେବା ଅପେକ୍ଷା ଟେଲିଭିଜନ୍‌ର ମନୋରଞ୍ଜନ କାର୍ଯ୍ୟକ୍ରମ ସେମାନଙ୍କୁ ଅଧିକ ପ୍ରଲୁବ୍ଧ କରିପାରୁଥିବ ହୁଏତ !

କିନ୍ତୁ ବିଜ୍ଞାନ କ'ଣ ଜନପ୍ରିୟ ହୋଇସାରିଲାଣି ? ଓଡ଼ିଶାର ଜନସାଧାରଣ କ'ଣ ବିଜ୍ଞାନ-ସାକ୍ଷର ହୋଇସାରିଲେଣି ? ସଂପ୍ରତି ପ୍ରକାଶ ପାଇଚାଲିଥିବା ବିଜ୍ଞାନ ଲେଖାମାନ କ'ଣ ତ୍ରୁଟିଶୂନ୍ୟ ? ଏସବୁ ପ୍ରଶ୍ନର ଉତ୍ତର ଯଦି 'ନା' ହୁଏ, ତେବେ ସମିତି ତା'ର ଉପଯୋଗିତା ହରେଇ ବସିଛି ବୋଲି କୁହାଯିବ କାହିଁକି ? ତେବେ ତା'ର କାର୍ଯ୍ୟଧାରାର ପାରମ୍ପରିକତା ବୋଧହୁଏ ଚାହୁଁଛି ପରିବର୍ତ୍ତନ । ବର୍ତ୍ତମାନର ସମୟ, ଆବଶ୍ୟକତା ଓ ଉପଭୋକ୍ତାମାନଙ୍କ ମାନସିକତାକୁ ବିଚାରକୁ ନେଇ ସମିତି ତା'ର କାର୍ଯ୍ୟକ୍ରମରେ ପରିବର୍ତ୍ତନ ଆଣିପାରିଲେ ସମିତିର ସ୍ଥାଣୁତାରେ ଅନ୍ତ ଘଟିପାରେ ବୋଲି ମୋର ଧାରଣା । ନୂତନ ଆଗ୍ରହ ଓ ନୂତନ ଉଦ୍ଦୀପନା ନେଇ ସମିତି ପୁଣି ଲାଗିପଡ଼ିପାରେ ବିଜ୍ଞାନକୁ ଜନପ୍ରିୟ କରାଇବାର ଆନ୍ଦୋଳନରେ ।

ଆମେରିକୀୟ ପଦାର୍ଥ ବିଜ୍ଞାନୀ ଆଲ୍‌ବର୍ଟ୍ କହିଥିଲେ — "ଅନେକ ବ୍ୟକ୍ତି ପ୍ରବାଦରେ ବ୍ୟକ୍ତ ଓଟପକ୍ଷୀଭଳି ଆଚରଣ ପ୍ରଦର୍ଶନ କରୁଛନ୍ତି । ସେମାନେ ଆଶା ପୋଷଣ କରିଚାଲିଛନ୍ତି ଯେ ସେମାନେ ଓଟପକ୍ଷୀସଦୃଶ ବାଲିରେ ମୁଣ୍ଡପୋତି ରହିଥିବାବେଳେ ବିଜ୍ଞାନ ତା' ବାଟରେ ଚାଲିଯିବ । କିନ୍ତୁ ବିଗତ ବହୁ ଦଶନ୍ଧି ଏହି ସୂଚନା ପ୍ରଦାନ କରିଚାଲିଛି ଯେ ବିଜ୍ଞାନ ଆମକୁ ଛାଡ଼ି ଆଦୌ ପଳେଇ ଯିବନି ।'

ଇଂରେଜ ରସାୟନବିତ୍ ଜର୍ଜ ପୋର୍ଟର୍‌ଙ୍କ ଭାଷାରେ — "ଯେଉଁମାନେ ବିଜ୍ଞାନର ନାଁ ଶୁଣି କନ୍ଦାକଟା କରି ଛାଟିପିଟି ହେଉଛନ୍ତି, ସେମାନଙ୍କୁ ଏକବିଂଶ ଶତାବ୍ଦୀର ବିଜ୍ଞାନ ଭିତରକୁ ଘୋଷାରି ଘୋଷାରି ଆଣିବା ଆମର କର୍ତ୍ତବ୍ୟ ।"

ଏହା ସ୍ୱୀକାର୍ଯ୍ୟ ଯେ ବିଜ୍ଞାନ ସଂପର୍କିତ ଜ୍ଞାନ ଲାଭ ଏକ ସାଂସ୍କୃତିକ ଆବଶ୍ୟକତା । ତେଣୁ ବିଜ୍ଞାନ ପ୍ରଚାର ସମିତିର କାର୍ଯ୍ୟ ସବୁବେଳେ ଅପୂର୍ଣ୍ଣ ରହିଥିବ ।

ତେଣୁ ସମିତି ସ୍ୱାସ୍ଥ୍ୟବତୀ ରହୁ, ଆୟୁଷ୍ମତୀ ହେଉ — ତା'ର ଷଷ୍ଟିତମ ଜୟନ୍ତୀରେ ଏହାହିଁ ଆମର ଆନ୍ତରିକ କାମନା ।

'ଅଭୀପ୍‌ସା'
ସେକ୍ଟର – ୬, ପ୍ଲଟ୍ ନଂ.-୧୧୩୧
ଅଭିନବ ବିଡ଼ାନାସୀ, କଟକ - ୭୫୩ ୦୧୪
(ପ୍ରକାଶନ ସଂପାଦକ, ବିଜ୍ଞାନ ପ୍ରଚାର ସମିତି)



# ହୀରକ ଶୁଭେଚ୍ଛା

**ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ**

ଷାଠିଏ ବରଷ ପୂରିଲା ଆଜିକି
କିଏ କହେ ତୁମେ ବୁଢ଼ା ?
ଯେଉଁପରି ଥିଲ ରହି ଯାଇଅଛ
ସେହିପରି ଦର ଗଢ଼ା ।୧ ।

ବାରବୁଲା ହୋଇ ଥକି ପଡ଼ିଲାରୁ
ଯେଉଁଠି ଥାପିଲ ଡେରା
ନିଜର ବୋଲି ତା' କହିବା ପାଇଁକି
ଛିଭ ଲେଉଟୁନି ପରା ।୨ ।

ନାହିଁ ନିଜ ବାସ ନାହିଁ ପରବାସ
ତଥାପି ମହାନ ତୁମେ
ବିନା ଉପକ୍ରମେ ହୋଇଅଛ ଖ୍ୟାତ
ଆଜି ଏ ଓଡ଼ିଶା ଧାମେ ।୩ ।

ଭଞ୍ଜ ମେଡ଼ିକାଲ ଗମ୍ଭୀରା ଭିତରେ
ଯେଉଁ ଦିନ ହେଲ ଜାତ
କୁଆଁ କୁଆଁ ରାବେ ଥରାଇଲା ଧରା
ଦୋହଲାଇ ଗୋଡ଼ ହାତ ।୪ ।

ଗୋକୁଳାନନ୍ଦଙ୍କ ମାନସ ପିତୁଳା
ସଦାଶିବ କୋଳେ ଶୋଇ
କୃଷ୍ଣନାମ ଗାଇ ବଢୁଥିଲ ତୁମେ
ଅତି ସୁକୁମାର ହୋଇ । ୫ ।

ରାଧାନାଥଙ୍କର ରାଈ ମନ ଭୁଲା
ନାନାବାଦ୍ୟ ଗୀତ ଶୁଣି
ଶ୍ୟାମାନନ୍ଦ ଆଉ ମହେନ୍ଦ୍ର ଗୋପାଳ
ମନ ନେଉଥିଲ କିଣି ।୬ ।

ବିତିଗଲା ଦିନ ଶୈଶବୁ ଯୌବନ
ଯୌବନରୁ ଆଜି ବୃଦ୍ଧ
ସାରା ରାଇଜକୁ ଆବୋରି ନେଇଛ
ପାଲଟି ଯାଇଛ ବୁଦ୍ଧ । ୭ ।

ଖୋଲାମନ ନେଇ ବିଶାଳ ହୃଦୟେ
ପ୍ରସାରି ଦେଇଛ ହାତ
ପଣ ପଣ ହୋଇ ବିଜ୍ଞାନୀ ପ୍ରବୀଣ
ହୋଇଛନ୍ତି ଆତ ଯାତ । ୮ ।

ଚୁମ୍ବକ ପରାଏ ଆଣିଅଛ ଟାଣି
ଯେତେ ଛନ୍ତି ଜ୍ଞାନୀ ଗୁଣୀ
ଆଳାପେ ବିଳାପେ ଆମୋଦ ପ୍ରମୋଦେ
ମନ ନେଇଅଛ କିଣି । ୯ ।

ତୁମରି ଆଶିଷ ମୁଣ୍ଡରେ ବହି
ତୁମରି ପ୍ରସାଦ ସେବି
ନିଜ ଗୋଡ଼େ ଆଜି ଠିଆ ହୋଇଛନ୍ତି
କେତେ ଯେ ଲେଖକ କବି ।୧୦ ।

ତୁମ ପରିଚୟେ ହୋଇ ପରିଚିତ
ବାଣ୍ଟିଛନ୍ତି ଜ୍ଞାନ ମଞ୍ଜି
କରିଛନ୍ତି ପଣ ଆହୁରି ବାଣ୍ଟିବେ
ଯେତେ ରଖିଅଛ ଖଞ୍ଜି ।୧୧ ।

ସେହି ମଞ୍ଜି ଫୁଟି ପାଲଟିବ ଚାରା
ଚାରାରୁ ହୋଇବ ଦ୍ରୁମ
ସବୁ ଦ୍ରୁମ ମିଶି ହୋଇବ ଅରଣ୍ୟ
ମହକାଇ ତୁମ ନାମ ।୧୨ ।

ସେହି ମହକରେ ମହକିତ ହୋଇ
ବିଜ୍ଞାନର ହେଉ ଜୟ
ପ୍ରସାରିତ ହେଉ ଜ୍ଞାନର ବଳୟ
ତୁମଠାରେ ରଖି ଲୟ ।୧୩ ।

ହୁଅ ଦୀର୍ଘଜୀବୀ ହୁଅ ଅନୁଭବୀ
ହୁଅ ତୁମେ ବିଶ୍ୱ ଜିତା
ଷାଠିଏକୁ ଟପି ଶତକ ପୂରାଇ
ସଦା ଟେକି ରୁହ ମଥା ।୧୪ ।

ସଂପାଦକ, ହୀରକ ସ୍ମାରକୀ



# ସମିତିର ପ୍ରାଣବିନ୍ଦୁ

## ସମିତିର ପ୍ରତିଷ୍ଠାତା ସଦସ୍ୟ

୧. ✓ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ
୨. ✓ ଡାକ୍ତର ରାଇକୃଷ୍ଣ ମହାନ୍ତି
୩. ✓ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର
୪. ✓ ଡକ୍ଟର ଶ୍ୟାମାନନ୍ଦ ପଟ୍ଟନାୟକ
୫. ✓ ଡକ୍ଟର ସଦାଶିବ ମିଶ୍ର
୬. ଡକ୍ଟର ଗୋକୁଳାନନ୍ଦ ମହାପାତ୍ର
୭. ଡକ୍ଟର ସୁକୁମାର ଆଦିତ୍ୟ
୮. ✓ ଅଧ୍ୟାପକ କୃଷ୍ଣ ଚରଣ ଦାସ
୯. ଡକ୍ଟର ରାଧାନାଥ ରଥ

## ସମିତିର ପୃଷ୍ଠପୋଷକଙ୍କ ନାମ

୧. ✓ ଅଧ୍ୟାପକ ଗିରିଜା ଶଙ୍କର ରାୟ
୨. ✓ ନୀଳମଣି ସେନାପତି (ଆଇ. ସି. ଏସ୍.)
୩. ✓ ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ
୪. ✓ ହରେକୃଷ୍ଣ ମହତାବ (ତା୨୦.୭.୮୬ ଠାରୁ)
୫. ଶ୍ରୀ ସହଦେବ ସାହୁ, ଆଇ. ଏ. ଏସ୍ (୩୧.୭.୯୪ ଠାରୁ)
୬. ଶ୍ରୀ ହିମାଂଶୁ କୁମାର ମହାନ୍ତି

## ସମିତିର ଦିବଂଗତ ସଭ୍ୟ

୧. ଡାଃ ଗୋପାଳ ଚନ୍ଦ୍ର ପଟ୍ଟନାୟକ
୨. ଡାଃ ରାଇକୃଷ୍ଣ ମହାନ୍ତି
୩. ଡାଃ ମହେନ୍ଦ୍ର ଚନ୍ଦ୍ର ମିଶ୍ର
୪. ଡଃ ସଦାଶିବ ମିଶ୍ର
୫. ଡଃ ଶ୍ୟାମାନନ୍ଦ ପଟ୍ଟନାୟକ
୬. ଡଃ ଗଣେଶ୍ୱର ବିଶ୍ୱାଳ
୭. ଡଃ ବିଶ୍ୱନାଥ ସାହୁ
୮. ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
୯. ଡଃ ଜୟକୃଷ୍ଣ ମହାନ୍ତି
୧୦. ଡଃ ଗଦାଧର ମିଶ୍ର
୧୧. ଡାଃ କେଶବ ଚନ୍ଦ୍ର ସାହୁ
୧୨. ଡଃ ହରିହର ପଟ୍ଟନାୟକ
୧୩. ଡାଃ ଯୋଗୀନ୍ଦ୍ର ମୋହନ ସେନାପତି
୧୪. ଡାଃ ବନମାଳୀ ମହାନ୍ତି
୧୫. ଡାଃ ଗୋପୀନାଥ ପ୍ରସାଦ ମହାନ୍ତି
୧୬. ମେଜର ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି
୧୭. ଡାଃ ବିକ୍ରମ ଦାସ
୧୮. ଡାଃ ବିଦ୍ୟାଧର ଦାଶ
୧୯. ଡାଃ ମହାମାୟା ପଟ୍ଟନାୟକ
୨୦. ନିକୁଞ୍ଜ ବିହାରୀ ମିଶ୍ର
୨୧. ଡାଃ ଗୋପାଳ ଚନ୍ଦ୍ର ରଥ
୨୨. ଗୌରୀଶ୍ୟାମ ଦାସ
୨୩. ବିଭୂତିଭୂଷଣ ପଟ୍ଟନାୟକ
୨୪. ଡାଃ ଫକୀରମୋହନ ବେହେରା
୨୫. ମେଜର ପ୍ରସନ୍ନ କୁମାର ଦାଶ
୨୬. ଡଃ ବିଦ୍ୟାଧର ପାଢ଼ୀ
୨୭. ଡଃ ବଂଶୀଧର ପରିଜା
୨୮. ଡଃ ଘନଶ୍ୟାମ ମହାପାତ୍ର
୨୯. ଡାଃ ଶରତ ଚନ୍ଦ୍ର ମିଶ୍ର
୩୦. ଡଃ ଅମୂଲ୍ୟ କୃଷ୍ଣ ମିଶ୍ର
୩୧. ଡାଃ ଭୁବନାନନ୍ଦ ଦାଶ
୩୨. ଶରତ ଚନ୍ଦ୍ର ମହାନ୍ତି
୩୩. ଡେଭିଡ୍ ରବୀନ୍ଦ୍ର ସାହୁ
୩୪. ପ୍ରସନ୍ନ କୁମାର ଦାସ
୩୫. ଚୌଧୁରୀ ବିଚିତ୍ରାନନ୍ଦ ନନ୍ଦ
୩୬. ଡଃ ଚିତ୍ରାନନ୍ଦ ନନ୍ଦ
୩୭. ଡାଃ ଗିରିଜା ଶଙ୍କର ଦାଶ ମହାପାତ୍ର
୩୮. ଡାଃ ଜ୍ୟୋତ୍ସ୍ନା ଦେଈ
୩୯. ଇଂ. ଗୋବିନ୍ଦ ଗୁପ୍ତା
୪୦. ଡାଃ ଆକୁଳାନନ୍ଦ ଷଡ଼ଙ୍ଗୀ
୪୧. ଡାଃ ଶ୍ରୀନିବାସ ଶତପଥୀ
୪୨. ଲକ୍ଷ୍ମୀ ନାରାୟଣ ନନ୍ଦ
୪୩. ଅଧ୍ୟାପକ କୃଷ୍ଣ ଚରଣ ଦାସ

# ସମିତିର ଆଜୀବନ ସଦସ୍ୟ

[ ବରିଷ୍ଠତା ଭିତ୍ତିରେ ନୁହନ୍ତି ]

୧. ଡଃ ଗୋକୁଳାନନ୍ଦ ମହାପାତ୍ର
୨. ଡଃ ସୁକୁମାର ଆଦିତ୍ୟ
୩. ଡଃ ରାଧାନାଥ ରଥ
୪. ଡଃ କୁଳମଣି ସାମଲ
୫. ଡଃ ପତିତପାବନ ମିଶ୍ର
୬. ଶ୍ରୀ ନନ୍ଦ କିଶୋର ମିଶ୍ର
୭. ଡାଃ ଗୁରୁପ୍ରସାଦ ମହାନ୍ତି
୮. ଡଃ ବସନ୍ତ କୁମାର ବେହୁରା
୯. ଡାଃ ନିମାଇଁ ଚରଣ ପଣ୍ଡା
୧୦. ଡାଃ ବାସୁଦେବ କର
୧୧. ଡଃ କମଳ କୁମାରୀ ପଟ୍ଟନାୟକ
୧୨. ଡଃ ପ୍ରିୟତମା ଦେଓ
୧୩. ଡଃ ଦୀନବନ୍ଧୁ ମିଶ୍ର
୧୪. ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ
୧୫. ଡାଃ ସନାତନ ରଥ
୧୬. ଡାଃ ରାଧାଚରଣ ମହାନ୍ତି
୧୭. ଡାଃ ମନୋରଞ୍ଜନ ମହପାତ୍ର
୧୮. ଡାଃ ନିରଞ୍ଜନ ତ୍ରିପାଠୀ
୧୯. ଡାଃ କ୍ଷିତୀଶ ଚନ୍ଦ୍ର ସାମଲ
୨୦. ଶ୍ରୀ ହରପ୍ରସାଦ ଦାସ
୨୧. ଡାଃ ଯୋଗମାୟା ପଟ୍ଟନାୟକ
୨୨. ଡାଃ ଶୈଳେଶ୍ୱର ନନ୍ଦ
୨୩. ଶ୍ରୀ ବୈକୁଣ୍ଠନାଥ ଶତପଥୀ
୨୪. ଡାଃ ଶଶୀ ନାରାୟଣ ମହାପାତ୍ର
୨୫. ଶ୍ରୀମତୀ ଉର୍ମିଳା ମିଶ୍ର
୨୬. ଡଃ ଦେବପ୍ରସାଦ ନନ୍ଦ
୨୭. ଡଃ ନିତ୍ୟାନନ୍ଦ ସ୍ୱାଇଁ
୨୮. ଡଃ ସତ୍ୟବ୍ରତ ମିଶ୍ର
୨୯. ଡାଃ ପ୍ରିୟମୋହନ ମହାନ୍ତି
୩୦. ଶ୍ରୀମତୀ ଯୂଥିକା ମହାନ୍ତି
୩୧. ଶ୍ରୀମତୀ ଗୀତାମୟୀ ବେହେରା
୩୨. ଶ୍ରୀମତୀ ଉତ୍ତରା ପଟ୍ଟନାୟକ
୩୩. ଶ୍ରୀମତୀ ପୁଷ୍ପମାଳା ପଟ୍ଟନାୟକ
୩୪. ଶ୍ରୀମତୀ କାନ୍ତି କୁମାରୀ ରାମ
୩୫. ଶ୍ରୀମତୀ ଜାନକୀ କୁମାରୀ ମହାନ୍ତି
୩୬. କୁମାରୀ କୃଷ୍ଣପ୍ରିୟା ଦାସ
୩୭. ଶ୍ରୀମତୀ ବି. ଭି. ଅଳକା
୩୮. ଡାଃ ଲକ୍ଷ୍ମୀକାନ୍ତ ସାହୁ
୩୯. ଡଃ ବୈଷ୍ଣବ ଚରଣ ସିଂହ
୪୦. ଡାଃ ପ୍ରଫୁଲ୍ଲ କୁମାର ତ୍ରିପାଠୀ
୪୧. ଶ୍ରୀ ଯତୀନ୍ଦ୍ର ନାଥ ମହାନ୍ତି
୪୨. ଇଂ ଅମିୟ କୁମାର ବେହେରା
୪୩. ଡାଃ ସରୋଜିନୀ ଦାଶ
୪୪. ଶ୍ରୀ କିଶୋର ଚନ୍ଦ୍ର ପଟ୍ଟନାୟକ
୪୫. ଡାଃ ଆଲୋକ କାନୁନ୍‌ଗୋ
୪୬. ଡାଃ ବୀରେନ୍ଦ୍ର କୁମାର ଦାସ
୪୭. ଶ୍ରୀ ନଟବର ସାହୁ
୪୮. ଡାଃ ବାଞ୍ଛାନିଧି ପରିଡ଼ା
୪୯. ଡଃ ନିଖିଳ ମୋହନ ପଟ୍ଟନାୟକ
୫୦. ଡଃ ସ୍ୱାଧୀନାନନ୍ଦ ପଟ୍ଟନାୟକ
୫୧. ଡାଃ ନଳିନୀ ନାୟକ
୫୨. ଡାଃ ଜନାର୍ଦ୍ଦନ ମହାନ୍ତି
୫୩. ଡଃ ଇକ୍‌ବାଲ ହୁସେନ୍
୫୪. ଡଃ ସୁଶୀଳ କୁମାର ମହାପାତ୍ର
୫୫. ଡାଃ ନିମାଇଁ ଚରଣ ପରିଜା
୫୬. ଡାଃ ପ୍ରତିଭା ସେନ୍
୫୭. ଡଃ ଦୀପ୍ତି ପଟ୍ଟନାୟକ
୫୮. ଶ୍ରୀ କଲ୍ୟାଣ ମହାପାତ୍ର
୫୯. ଶ୍ରୀ ନାରାୟଣ ମିଶ୍ର
୬୦. ଡାଃ ସୁଦର୍ଶନ ପଟ୍ଟନାୟକ
୬୧. ଡଃ ସୁଦର୍ଶନ ଶାସମଲ
୬୨. ଡାଃ କାଦମ୍ବରୀ ମିଶ୍ର
୬୩. ଶ୍ରୀ କ୍ଷୀରସାଗର ବେହେରା
୬୪. ଡଃ ଆଶୁତୋଷ ଦେବତା
୬୫. ଡଃ ତ୍ରିଜାମା ରଞ୍ଜନ ମହାନ୍ତି
୬୬. ଡଃ ପଞ୍ଚାନନ ପାତ୍ର
୬୭. ଶ୍ରୀ ବୃନ୍ଦାବନ ଚନ୍ଦ୍ର ପଣ୍ଡା
୬୮. ଡାଃ ରଞ୍ଜନ ସିଂହ
୬୯. ଡାଃ ବିଷ୍ଣୁ ପ୍ରିୟା ଦେବୀ

୭୦. ଡଃ ଅଭିମନ୍ୟୁ ମିଶ୍ର
୭୧. ଶ୍ରୀ ମହେନ୍ଦ୍ର କୁମାର କାୟସ୍ଥ
୭୨. ଶ୍ରୀମତୀ ଶରତ କୁମାରୀ ସାମନ୍ତ
୭୩. ଡଃ ଆକାଶ ସାହୁ
୭୪. ଶ୍ରୀ ଗିରୀଶ ଚନ୍ଦ୍ର ପଟ୍ଟନାୟକ
୭୫. ଡଃ ଦେବକାନ୍ତ ମିଶ୍ର
୭୬. ଡଃ ଭାସ୍କର ଦାଶ
୭୭. ଡାଃ ରଙ୍ଗାଧର ସୂତାର
୭୮. ଡଃ କାଞ୍ଚନ ଆଚାର୍ଯ୍ୟ
୭୯. ଶ୍ରୀ ବିଷ୍ଣୁ ଚରଣ ଜେନା
୮୦. ଶ୍ରୀ ହୃଦାନନ୍ଦ ଚୌଧୁରୀ
୮୧. ଡଃ ସଞ୍ଜୟ କୁମାର ସାମନ୍ତରାୟ
୮୨. ଶ୍ରୀ ପ୍ରମୋଦ କୁମାର ମିଶ୍ର
୮୩. ଡଃ ଅମୂଲ୍ୟ କୃଷ୍ଣ ପଣ୍ଡା
୮୪. ଡଃ ପ୍ରମୋଦ କୁମାର ମହାପାତ୍ର
୮୫. ଇଂ. ମୀରା ବିଶ୍ୱବନ୍ଧ୍ୟା
୮୬. ଶ୍ରୀ ବୃନ୍ଦାବନ ସିଂହ
୮୭. ଡାଃ ସଚ୍ଚିଦାନନ୍ଦ ଶତପଥୀ
୮୮. ଚୌଧୁରୀ ଶରତ ଚନ୍ଦ୍ର ଦାସ
୮୯. ଡଃ ଶରତ ଚନ୍ଦ୍ର ସାହୁ
୯୦. ଶ୍ରୀ ନଗେନ୍ଦ୍ର କୁମାର ମିଶ୍ର
୯୧. ଡଃ ମଧୁସୂଦନ କାନୁନ୍‌ଗୋ
୯୨. ଡାଃ ପ୍ରସନ୍ନ କୁମାର ରାଠୋର
୯୩. ଡଃ ବିଜୟ କୁମାର ପରିଡ଼ା
୯୪. ଡଃ ଶିବ ପ୍ରସାଦ ଅଧିକାରୀ
୯୫. ଡଃ ଜୟନ୍ତୀ କୁମାରୀ ସାହୁ
୯୬. ଡାଃ ବିଜୟ କୁମାର ଦାଶ
୯୭. ଶ୍ରୀମତୀ ବିଷ୍ଣୁପ୍ରିୟା ମହାନ୍ତି
୯୮. ଶ୍ରୀ ଶଙ୍କର ପ୍ରସାଦ ଅଧିକାରୀ
୯୯. ଶ୍ରୀ ଗୋପାଳ ଚରଣ ବେହେରା
୧୦୦. ଶ୍ରୀମତୀ କୁମୁଦିନୀ ଜୀ
୧୦୧. ଶ୍ରୀମତୀ ଆଶାଲତା ବେହେରା
୧୦୨. ଶ୍ରୀ ନାରାୟଣ ସାହୁ
୧୦୩. ଶ୍ରୀ ନିରଞ୍ଜନ ପାତ୍ର
୧୦୪. ଶ୍ରୀମତୀ ପ୍ରତିମା ସ୍ୱାଇଁ
୧୦୫. ଶ୍ରୀ ଭାଗୀରଥି ସାହୁ
୧୦୬. ଶ୍ରୀ ଉତ୍କଳ ରଞ୍ଜନ ମହାନ୍ତି
୧୦୭. ଶ୍ରୀ ସାଧୁଚରଣ ପ୍ରଧାନ
୧୦୮. ଶ୍ରୀ ବିଶ୍ୱନାଥ ନାୟକ
୧୦୯. ଡାଃ ଯାମିନୀକାନ୍ତ ମହାପାତ୍ର
୧୧୦. କୁମାରୀ ସୁନୟନା ଦେଓ
୧୧୧. ଶ୍ରୀ ପ୍ରସନ୍ନ କୁମାର ମିଶ୍ର
୧୧୨. ଶ୍ରୀ ପ୍ରସନ୍ନ ମହାନ୍ତି
୧୧୩. ଶ୍ରୀ ନନ୍ଦନ ମହାନ୍ତି
୧୧୪. ଡଃ ଗୌରାଙ୍ଗ ଚନ୍ଦ୍ର ମହାନ୍ତି
୧୧୫. ଡାଃ ରବି ରଞ୍ଜନ ସାହୁ
୧୧୬. ଡାଃ ପ୍ରଭାତ ମିଶ୍ର
୧୧୭. ଡଃ ବିଜୟ କୁମାର ଚୌଧୁରୀ
୧୧୮. ଡାଃ ରମାରମଣ ଷଡ଼ଙ୍ଗୀ
୧୧୯. ଡାଃ ଗଣେଶ୍ୱର ବେହେରା
୧୨୦. ଡାଃ କୃପାସିନ୍ଧୁ ପଣ୍ଡା
୧୨୧. ଶ୍ରୀମତୀ ଅନସୂୟା ମିଶ୍ର
୧୨୨. ଶ୍ରୀ ବିଷ୍ଣୁଚରଣ ଦାସ
୧୨୩. ଡାଃ ଦେବେନ୍ଦ୍ର ନାଥ ବିଶ୍ୱାଳ
୧୨୪. ଡାଃ ଇନ୍ଦ୍ରମଣି ସାହୁ
୧୨୫. ଡଃ ନରୋତ୍ତମ ସାହୁ
୧୨୬. ଶ୍ରୀମତୀ ସଂଘମିତ୍ରା ଦେଓଭଞ୍ଜ
୧୨୭. କୁମାରୀ ବାଗ୍ମୀ ମିଶ୍ର
୧୨୮. ଶ୍ରୀ ଉପେନ୍ଦ୍ର ନାଥ ରାଉତ
୧୨୯. ଡାଃ ଅଶୋକ କୁମାର ସାହୁ
୧୩୦. ଶ୍ରୀ ସୁଭାଷ ଚନ୍ଦ୍ର ରାଉତ
୧୩୧. ଶ୍ରୀ ସୁଶୀଳ କୁମାର ମହାପାତ୍ର
୧୩୨. ଶ୍ରୀ ରବିନାରାୟଣ ସାହୁ
୧୩୩. ଶ୍ରୀ ପ୍ରଦ୍ୟୁମ୍ନ କିଶୋର ମିଶ୍ର
୧୩୪. ଡଃ କିଶୋର ଚନ୍ଦ୍ର ମହାନ୍ତି
୧୩୫. ଶ୍ରୀ ସନାତନ ଖୁଣ୍ଟିଆ
୧୩୬. ଡଃ ଅଖିଳ କୃଷ୍ଣ ପାଣିଗ୍ରାହୀ
୧୩୭. ଡଃ ସଚ୍ଚିନ୍ଦ୍ର ନାରାୟଣ ପଟ୍ଟନାୟକ
୧୩୮. ଡଃ ରମେଶ ଚନ୍ଦ୍ର ପରିଡ଼ା
୧୩୯. ଶ୍ରୀ ଭାଗୀରଥି ପରିଡ଼ା
୧୪୦. ଶ୍ରୀମତୀ ଶକୁନ୍ତଳା ମହାନ୍ତି
୧୪୧. ଡାଃ ତପନ କୁମାର ପାତ୍ର
୧୪୨. ଡାଃ ଦୟାନିଧି ଦାଶ
୧୪୩. ଡାଃ ଲଲାଟେନ୍ଦୁ ପଟ୍ଟନାୟକ
୧୪୪. ଡଃ ପ୍ରଫୁଲ୍ଲ କୁମାର ମହାନ୍ତି
୧୪୫. ଶ୍ରୀ ସୁରେଶ ଚନ୍ଦ୍ର ନାଗ

୧୪୬. ଡଃ ଆରତୀବାଳା ପୃଷ୍ଟି
୧୪୭. ଶ୍ରୀ ନାରାୟଣ ଚନ୍ଦ୍ର ପାଳ
୧୪୮. ଡଃ ଅଭୟ କୁମାର ଦଳାଇ
୧୪୯. ଡାଃ ବାସନ୍ତୀ ବହିଦାର
୧୫୦. ଡଃ ଶରତ ଚନ୍ଦ୍ର ମିଶ୍ର
୧୫୧. ଶ୍ରୀ କୃଷ୍ଣ ଚନ୍ଦ୍ର ପଣ୍ଡା
୧୫୨. ଡାଃ ବିଦ୍ୟାଧର ଶତପଥୀ
୧୫୩. ଡାଃ ତୁଷାର କର
୧୫୪. ଶ୍ରୀ ସୁଧୀର ଚନ୍ଦ୍ର ବେହେରା
୧୫୫. ଡାଃ ଭକ୍ତିଲତା ରାୟ
୧୫୬. ଡାଃ ସୁଶୀଲ କୁମାର ଗିରି
୧୫୭. ଡାଃ ଅନ୍ନପୂର୍ଣ୍ଣା ଦେବୀ
୧୫୮. ଡାଃ ଶୁକଦେବ ନାୟକ
୧୫୯. ଡଃ ଦିଲୀପ କୁମାର କର
୧୬୦. ଡଃ ମୃତ୍ୟୁଞ୍ଜୟ ପ୍ରଧାନ
୧୬୧. ଶ୍ରୀ ଶରତ ଚନ୍ଦ୍ର ମିଶ୍ର
୧୬୨. ଶ୍ରୀ ହିମାଂଶୁ ଶେଖର ଫତେସିଂହ
୧୬୩. ଡଃ ସୁବାସିନୀ ଲେଙ୍କା
୧୬୪. ଡାଃ ସର୍ବେଶ୍ୱର ସ୍ୱାଇଁ
୧୬୫. ଶ୍ରୀ ଭୀମସେନ ଦାଶ
୧୬୬. ଶ୍ରୀମତୀ କଳ୍ପନା ଗରାବଡୁ
୧୬୭. ଡଃ ରାମକୃଷ୍ଣ କର
୧୬୮. ଡଃ ବିଷ୍ଣୁପ୍ରିୟା ଭୂୟାଁ
୧୬୯. ଡଃ ଅନ୍ନପୂର୍ଣ୍ଣା ଷଡ଼ଙ୍ଗୀ
୧୭୦. ଡଃ ପ୍ରତିଭା ମିଶ୍ର
୧୭୧. ଶ୍ରୀ ସଲିଲ କୁମାର ଚକ୍ରବର୍ତ୍ତୀ
୧୭୨. ଡଃ ରମେଶ ଚନ୍ଦ୍ର ପାତ୍ର
୧୭୩. ଡଃ ଭାରତୀ ବେହେରା
୧୭୪. ଡଃ ପଦନ କୁମାର ଜେନା
୧୭୫. ଡଃ ସନ୍ଦୀପ କୁମାର ରାଏ
୧୭୬. ଶ୍ରୀ ଭକ୍ତ ଚରଣ ସାହୁ
୧୭୭. ଡଃ ଇନ୍ଦୁରେଖା ପରିଜା
୧୭୮. ଡଃ ମୋଚିରାମ ଦାସ
୧୭୯. ଡଃ ପ୍ରମୋଦ କୁମାର କାନୁନ୍‌ଗୋ
୧୮୦. ଡଃ ରମାକାନ୍ତ ପରିଡ଼ା
୧୮୧. ଡଃ ବିଭବଲକ୍ଷ୍ମୀ ନାୟକ
୧୮୨. ଶ୍ରୀ ଅମୂଲ୍ୟ କୁମାର ବେହେରା
୧୮୩. ଡଃ ରେବତୀ ଚରଣ ଦାସ
୧୮୪. ଡଃ ସନାତନ ଦାସ ମୁଖାର୍ଜୀ
୧୮୫. ଶ୍ରୀ ହରିହର ତ୍ରିପାଠୀ
୧୮୬. ଶ୍ରୀ ବାବାଜୀ ଚରଣ ମିଶ୍ର
୧୮୭. ଶ୍ରୀ ହେମନ୍ତ କୁମାର ଦାସ
୧୮୮. ଶ୍ରୀ ମହେଶ୍ୱର ମିଶ୍ର
୧୮୯. ଶ୍ରୀ ବିମ୍ବାଧର ନାୟକ
୧୯୦. ଶ୍ରୀ ପ୍ରହ୍ଲାଦ ଚନ୍ଦ୍ର ନନ୍ଦ
୧୯୧. ଶ୍ରୀ ବିହାରୀ ତ୍ରିପାଠୀ
୧୯୨. ଶ୍ରୀ ରାମଚନ୍ଦ୍ର ଓଝା
୧୯୩. ଶ୍ରୀ ବିରଳ କୁମାର ଚାନ୍ଦ
୧୯୪. ଶ୍ରୀ କୁମୁଦକାନ୍ତ ତ୍ରିପାଠୀ
୧୯୫. ଶ୍ରୀ ସାମୁଏଲ ପଟ୍ଟନାୟକ
୧୯୬. ଶ୍ରୀ ପ୍ରଶାନ୍ତ କୁମାର ମିଶ୍ର
୧୯୭. ଡଃ ରାମଚନ୍ଦ୍ର ରଥ
୧୯୮. ଡଃ ରବୀନ୍ଦ୍ର କୁମାର ନନ୍ଦ
୧୯୯. ଶ୍ରୀ ଜଗନ୍ନାଥ ଶା
୨୦୦. ଡଃ ଗଙ୍ଗାଧର ସାହୁ
୨୦୧. ଶ୍ରୀ ଚିତ୍ତରଞ୍ଜନ ଦାସ
୨୦୨. ଶ୍ରୀ ନୃସିଂହ ଚରଣ ସାମଲ
୨୦୩. ଶ୍ରୀ ଜୟଗୋପାଳ ମହାନ୍ତି
୨୦୪. ଶ୍ରୀ ବିଷ୍ଣୁଚରଣ ତ୍ରିପାଠୀ
୨୦୫. ଶ୍ରୀ ପ୍ରତାପ ଚନ୍ଦ୍ର ସିଂହ
୨୦୬. ଶ୍ରୀ ପାର୍ବତୀ ଚରଣ ପତି
୨୦୭. ଶ୍ରୀ ଜୟନ୍ତ କୁମାର ଦାସ
୨୦୮. ଡଃ ଜ୍ୟୋତିଷ ଚନ୍ଦ୍ର ଆଚାର୍ଯ୍ୟ
୨୦୯. ଶ୍ରୀ ଚାରୁଚନ୍ଦ୍ର ହାଜରା
୨୧୦. ଶ୍ରୀ ମିତ୍ରଭାନୁ ଶତପଥୀ
୨୧୧. ଶ୍ରୀ ନିରଞ୍ଜନ ମହାନ୍ତି
୨୧୨. ଶ୍ରୀ ରବୀନ୍ଦ୍ର ନାଥ ଦାଶ
୨୧୩. ଶ୍ରୀ ମିଳନ କୁମାର ବେହେରା
୨୧୪. ଶ୍ରୀ ଭାବଗ୍ରାହୀ ମିଶ୍ର
୨୧୫. ଡାଃ ଦୁର୍ଗାଚରଣ ଜେନା
୨୧୬. ଶ୍ରୀ ଅନିଲ କୁମାର ପାଲ
୨୧୭. ଶ୍ରୀ ଭାଗବତ ପ୍ରସାଦ ପାତ୍ର
୨୧୮. ଶ୍ରୀ ଡି. ସତ୍ୟନାରାୟଣ
୨୧୯. ଶ୍ରୀ ହେମନ୍ତ କୁମାର ପ୍ରତିହାରୀ

୨୨୦. ଶ୍ରୀ ଚନ୍ଦ୍ରଶେଖର ମହାନ୍ତି
୨୨୧. ଶ୍ରୀ ସୁରେନ୍ଦ୍ର ନାଥ ଷଡ଼ଙ୍ଗୀ
୨୨୨. ଶ୍ରୀ ଅଜୟ କୁମାର ମହାନ୍ତି
୨୨୩. ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ
୨୨୪. ଡାଃ ନିରୁପମା ରଥ
୨୨୫. ଶ୍ରୀ ରାମାନନ୍ଦ ପଟ୍ଟନାୟକ
୨୨୬. ଶ୍ରୀ ବାମଦେବ ଦାଶ
୨୨୭. ଶ୍ରୀ ରବୀନ୍ଦ୍ର କୁମାର ମିଶ୍ର
୨୨୮. ଶ୍ରୀ କୃଷ୍ଣକୁମାର ସାରଖେଲ
୨୨୯. ଶ୍ରୀ ନରସିଂହ ପୃଷ୍ଟି
୨୩୦. ଶ୍ରୀ ଦେବେନ୍ଦ୍ର ନାଥ ରାଉତ
୨୩୧. ଶ୍ରୀ ବିଜୟ କୁମାର ପଟ୍ଟନାୟକ
୨୩୨. ଡାଃ ରତ୍ନାକର ଦାସ
୨୩୩. ଶ୍ରୀ ମଦନମୋହନ ସାମଲ
୨୩୪. ଶ୍ରୀ ଦିଗମ୍ବର ଶତପଥୀ
୨୩୫. ଡଃ ଦାମୋଦର ଲେଙ୍କା
୨୩୬. ଶ୍ରୀ ବିରଞ୍ଚି ପ୍ରସନ୍ନ ଦାସ
୨୩୭. ଶ୍ରୀ ଚିନ୍ତାମଣି ମିଶ୍ର
୨୩୮. ଶ୍ରୀ ରାଧାମୋହନ ମହାପାତ୍ର
୨୩୯. ଡଃ ଭାଗବତ ନନ୍ଦ
୨୪୦. ଶ୍ରୀ ଶଶିଭୂଷଣ ମହାନ୍ତି
୨୪୧. ଶ୍ରୀ ଅଶୋକ ମିତ୍ର
୨୪୨. ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ
୨୪୩. ଶ୍ରୀ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ
୨୪୪. ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର
୨୪୫. ଶ୍ରୀ କାହ୍ନୁଚରଣ ପଣ୍ଡା
୨୪୬. ଶ୍ରୀ ବସନ୍ତ କୁମାର ଦାସ
୨୪୭. ଶ୍ରୀ ଶଶିଭୂଷଣ ପ୍ରଧାନ
୨୪୮. ଡଃ ସଦାନନ୍ଦ ତରାସିଆ
୨୪୯. ଡାଃ ମଧୁସୂଦନ ଖାଡ଼ଙ୍ଗା
୨୫୦. ଡାଃ ବିଭୂତିଭୂଷଣ ପରିଡ଼ା
୨୫୧. ଡଃ କୈଳାସ ଚନ୍ଦ୍ର ବିଶ୍ୱାଳ
୨୫୨. ଶ୍ରୀ ପ୍ରଦୀପ ରାଓ
୨୫୩. ଶ୍ରୀ ଅକ୍ରୁର ସାହୁ
୨୫୪. ଶ୍ରୀ ବିମଳ କୁମାର ରଥ
୨୫୫. ଶ୍ରୀମତୀ ଶାନ୍ତିଲତା ପ୍ରଧାନ
୨୫୬. ଡଃ ଦେବେନ୍ଦ୍ର ନାଥ କାନୁନ୍‌ଗୋ
୨୫୭. ଶ୍ରୀ ପୂର୍ଣ୍ଣେନ୍ଦୁ ନାଥ ଦାସ
୨୫୮. ଶ୍ରୀ ମୁରାରିମୋହନ ଦାସ
୨୫୯. ଶ୍ରୀ ସୁରେନ୍ଦ୍ର କୁମାର ଦାସ
୨୬୦. ଶ୍ରୀ ଜନାର୍ଦ୍ଦନ ବେହେରା
୨୬୧. ଡାଃ ହରିଶ ଚନ୍ଦ୍ର ମହାନ୍ତି
୨୬୨. ଡଃ ବ୍ରଜସୁନ୍ଦର ମହାନ୍ତି
୨୬୩. ଶ୍ରୀ ନାରାୟଣ ଚନ୍ଦ୍ର ମହାକୁଳ
୨୬୪. ଶ୍ରୀ ପ୍ରବୀର ଚରଣ ମହାନ୍ତି
୨୬୫. ଡାଃ ରାଜକିଶୋର ସାହୁ
୨୬୬. ଶ୍ରୀ ପ୍ରମୋଦ ଚନ୍ଦ୍ର ସ୍ୱାଇଁ
୨୬୭. ଡଃ ଜିତେନ୍ଦ୍ରିୟ ନାଥ ମହାନ୍ତି
୨୬୮. ଶ୍ରୀମତୀ ସୁକାନ୍ତି ମହାପାତ୍ର
୨୬୯. ଡାଃ ନିରଞ୍ଜନ କର
୨୭୦. ଶ୍ରୀ ରଜନୀ ଭୂଷଣ ପାଣି
୨୭୧. ଡଃ ବିଜୟ କୁମାର ମିଶ୍ର
୨୭୨. ଶ୍ରୀ ପ୍ରମୋଦ କୁମାର ଆଚାର୍ଯ୍ୟ
୨୭୩. ଶ୍ରୀ ଅଭିଜିତ୍ ଘୋଷ
୨୭୪. ଡଃ ପି. କେ. ଦତ୍ତ
୨୭୫. ଡଃ ବିଶ୍ୱ ନାଥ
୨୭୬. ଡଃ ତ୍ରିଲୋଚନ ଦାସ
୨୭୭. ଡଃ ଏସ୍. ଏସ୍. କେ. ନନ୍ଦ
୨୭୮. ଶ୍ରୀ ଶ୍ରୀପତି କୁମାର ନାୟକ
୨୭୯. ଡଃ ଏ. କେ. ପ୍ରଧାନ
୨୮୦. ଶ୍ରୀ ପ୍ରତାପ କୁମାର ମହାନ୍ତି
୨୮୧. ଶ୍ରୀ ଲକ୍ଷ୍ମୀନାରାୟଣ ମହାପାତ୍ର
୨୮୨. ଶ୍ରୀ ନବକିଶୋର ମହାପାତ୍ର
୨୮୩. ଶ୍ରୀ ବସନ୍ତ ଭୂଷଣ ରଥ
୨୮୪. ଶ୍ରୀ ଅରୁଣ କୁମାର ରାୟ
୨୮୫. ଶ୍ରୀ କ୍ଷିତୀନ୍ଦ୍ର ସାହୁ
୨୮୬. ଶ୍ରୀ ବ୍ରଜେନ୍ଦ୍ର ନାଥ ସାହୁ
୨୮୭. ଶ୍ରୀ ଧନେଶ୍ୱର ସାହୁ
୨୮୮. ଡାଃ ଜିତେନ୍ଦ୍ର କୁମାର ବଳବନ୍ତରାୟ
୨୮୯. ଶ୍ରୀ ପ୍ରବୀର କୁମାର ମହାନ୍ତି
୨୯୦. ଡାଃ ସୁରେଶ ଚନ୍ଦ୍ର ମିଶ୍ର
୨୯୧. ଡଃ ସୁଧାଂଶୁ ଭୂଷଣ ତ୍ରିପାଠୀ
୨୯୨. ଡାଃ ନାରାୟଣ ନନ୍ଦ
୨୯୩. ଡାଃ ବାଲଚାନ୍ଦ ଅଗ୍ରୱାଲା

୨୯୪. ଡାଃ ବିଜୟ କିଶୋର ରଥ
୨୯୫. ଡାଃ ଶ୍ରୀନିବାସ ପଟ୍ଟନାୟକ
୨୯୬. ଡାଃ ଜଗଦୀଶ ଚନ୍ଦ୍ର ପଟ୍ଟନାୟକ
୨୯୭. ଡାଃ ଉମାଚରଣ ପଟ୍ଟନାୟକ
୨୯୮. ଡାଃ ପ୍ରଭାସ ଚନ୍ଦ୍ର ସିଂହ
୨୯୯. ଡାଃ ପୀତବାସ ସାହୁ
୩୦୦. ଡାଃ ଅଜିତ୍ କୁମାର କର
୩୦୧. ଡାଃ ରଣଜିତ୍ କିଶୋର ମହାନ୍ତି
୩୦୨. ଡାଃ କ୍ଷିତୀଶ ଚନ୍ଦ୍ର ମହାନ୍ତି
୩୦୩. ଶ୍ରୀ ସର୍ବେଶ୍ୱର ସାହୁ
୩୦୪. ଡଃ ହରେକୃଷ୍ଣ ପଣ୍ଡା
୩୦୫. ଡାଃ ବିଷ୍ଣୁ ଚରଣ ମିଶ୍ର
୩୦୬. ଶ୍ରୀ ଉମେଶ ଚନ୍ଦ୍ର ମିଶ୍ର
୩୦୭. ଶ୍ରୀ ମନୋରଞ୍ଜନ କର
୩୦୮. ଶ୍ରୀ ପ୍ରକାଶ କୁମାର ମହାପାତ୍ର
୩୦୯. ଡଃ ପଦ୍ମଲୋଚନ ନାୟକ
୩୧୦. ଡଃ ଧରଣୀଧର ମିଶ୍ର
୩୧୧. ଡାଃ ନନ୍ଦ କିଶୋର ଅଗ୍ରୱାଲ
୩୧୨. ଶ୍ରୀମତୀ ବିଷ୍ଣୁପ୍ରିୟା ଭୂୟାଁ
୩୧୩. ଶ୍ରୀମତୀ କଳ୍ପନା ମଞ୍ଜରୀ ଦାସ
୩୧୪. ଶ୍ରୀ ପ୍ରବୀର କୁମାର ବୋଷ
୩୧୫. ଶ୍ରୀ କୃତିବାସ ମହାନ୍ତି
୩୧୬. ଡାଃ ଧୀରେନ୍ଦ୍ର ନାଥ ଷଡ଼ଙ୍ଗୀ
୩୧୭. ଡାଃ ଦୁର୍ଯ୍ୟୋଧନ ଦାସ
୩୧୮. ଡଃ ରଘୁମଣି ମହାନ୍ତି
୩୧୯. ଶ୍ରୀ ଧନେଶ୍ୱର ସାହୁ
୩୨୦. ଶ୍ରୀ ଦେବେନ୍ଦ୍ର ନାଥ କର
୩୨୧. ଶ୍ରୀ ଶ୍ୟାମସୁନ୍ଦର ଦାସ
୩୨୨. ଶ୍ରୀ ଧ୍ରୁବ ଚରଣ ନନ୍ଦ
୩୨୩. ଡାଃ ପ୍ରସନ୍ନ କୁମାର ରାଉତରାୟ
୩୨୪. ଡାଃ ମନ୍ମଥ କୁମାର ମହାପାତ୍ର
୩୨୫. ଡାଃ ପ୍ରମୋଦ ରଞ୍ଜନ ମହାନ୍ତି
୩୨୬. ଡାଃ ଗୋପାଳ ଚନ୍ଦ୍ର କର
୩୨୭. ଶ୍ରୀ ନିର୍ମଳ କୁମାର ବେହେରା
୩୨୮. ଶ୍ରୀମତୀ ପ୍ରିୟମ୍ବଦା ବେହୁରା
୩୨୯. ଡାଃ କୃଷ୍ଣଚନ୍ଦ୍ର ପ୍ରଧାନ
୩୩୦. ଶ୍ରୀ ଶୁଭ୍ରାଂଶୁ ରାୟ
୩୩୧. ଶ୍ରୀ ଦିଲୀପ କୁମାର ସାହୁ
୩୩୨. ଶ୍ରୀ ହରିହର ମିଶ୍ର
୩୩୩. ଶ୍ରୀ ମଧୁସୂଦନ ଶତପଥୀ
୩୩୪. ଡାଃ ସଚ୍ଚିଦାନନ୍ଦ ନାୟକ
୩୩୫. ଡଃ ରାମକୃଷ୍ଣ ସାହୁ
୩୩୬. ଡାଃ ବନବିହାରୀ ମହାନ୍ତି
୩୩୭. ଡାଃ ପ୍ରଦୀପ୍ତ ଚନ୍ଦ୍ର ଖୁଣ୍ଟିଆ
୩୩୮. ଶ୍ରୀ ଧର୍ମାନନ୍ଦ ମହାରଣା
୩୩୯. ଶ୍ରୀମତୀ ପ୍ରଭାତୀ ମିଶ୍ର
୩୪୦. ଶ୍ରୀ ମୋହନ ଚରଣ ନାୟକ
୩୪୧. ଶ୍ରୀମତୀ ପୁଷ୍ପାରାଣୀ ମିଶ୍ର
୩୪୨. ଶ୍ରୀମତୀ ବାଗ୍ମୀ ମିଶ୍ର
୩୪୩. ଶ୍ରୀ ଯୁଗଳ କିଶୋର ଦାସ
୩୪୪. ଶ୍ରୀମତୀ ସୁଶୀଳା ଦେବୀ
୩୪୫. ଶ୍ରୀମତୀ ସୁଷମା ମିଶ୍ର
୩୪୬. ଶ୍ରୀମତୀ ମିନାକ୍ଷୀ ପୂଜାରୀ
୩୪୭. ଶ୍ରୀ ଆଶୁତୋଷ ସାମନ୍ତରାୟ
୩୪୮. ଶ୍ରୀମତୀ ସୁରମା ଦେବୀ
୩୪୯. ଡାଃ ଋତେନ୍ଦ୍ରନାଥ ମିତ୍ର
୩୫୦. ଶ୍ରୀ ଆଶା ମୁକୁଳ ମିତ୍ର
୩୫୧. ଶ୍ରୀ ଲକ୍ଷ୍ମୀଧର ମହାରଣା
୩୫୨. ଶ୍ରୀମତୀ କାଦମ୍ବିନୀ ଶତପଥୀ
୩୫୩. ଡାଃ ନୀରଦ କୁମାର ଗଛାୟତ
୩୫୪. ଶ୍ରୀ ଅପୂର୍ବ ରଞ୍ଜନ ରାୟ
୩୫୫. ଡାଃ ଦେବଦତ୍ତ ମିଶ୍ର
୩୫୬. ଡାଃ ଅଭୟ କୁମାର ପାତ୍ର
୩୫୭. ଡାଃ ନିର୍ମଳ କୁମାର ମହାନ୍ତି
୩୫୮. ଡାଃ ପ୍ରଦ୍ୟୁମ୍ନ କିଶୋର ମହାପାତ୍ର
୩୫୯. ଡାଃ ଚୌଧୁରୀ ନିହାର ରଞ୍ଜନ ନନ୍ଦ
୩୬୦. ଡାଃ ମଧୁମତୀ ମିଶ୍ର
୩୬୧. ଶ୍ରୀ ଦୟାନନ୍ଦ ତ୍ରିପାଠୀ
୩୬୨. ଶ୍ରୀ ନବ କୁମାର ଦାଶ
୩୬୩. କୁମାରୀ ଅନସୂୟା ଚୌଧୁରୀ
୩୬୪. ଡାଃ ସୂର୍ଯ୍ୟ ନାରାୟଣ ବେହେରା
୩୬୫. ଡଃ ବୀର ରାଘବନ୍
୩୬୬. ଡଃ ଜାପ୍ରାନ୍ କେଶରୀ ରାୟ
୩୬୭. ଡଃ ରାଜେନ୍ଦ୍ର ନାରାୟଣ ମିଶ୍ର
୩୬୮. ଶ୍ରୀ ବ୍ରଜେନ୍ଦ୍ର ନାରାୟଣ ରାଉତରାୟ

୩୬୯. ଶ୍ରୀ ନାରାୟଣ ସାହୁ
୩୭୦. ଶ୍ରୀ କିଶୋର ଚରଣ ପରିଡ଼ା
୩୭୧. ଶ୍ରୀ ହୃଷୀକେଶ ପାଣି
୩୭୨. ଡାঃ ବସନ୍ତ ମର୍ଦ୍ଦରାଜ
୩୭୩. ଡାঃ ସାଧୁଚରଣ ସାହୁ
୩୭୪. ଶ୍ରୀ ଅମର କୁମାର ମହାନ୍ତି
୩୭୫. ଡାঃ ସଂଗ୍ରାମ କେଶରୀ ବେହେରା
୩୭୬. ଡାঃ ରାମଚନ୍ଦ୍ର ମିଶ୍ର
୩୭୭. ଶ୍ରୀ ଯମେଶ୍ୱର ପୃଷ୍ଟି
୩୭୮. ଡଃ ଭୋଳାନାଥ ପାଢ଼ୀ
୩୭୯. ଶ୍ରୀ ବୀର କିଶୋର ସିଂହ
୩୮୦. ଶ୍ରୀ ଶୁଭେନ୍ଦୁ ମହାନ୍ତି
୩୮୧. ଡଃ ଚନ୍ଦ୍ରମଣି ପାତ୍ର
୩୮୨. ଡଃ ଉତ୍ତମ କୁମାର ବିଶ୍ୱାଳ
୩୮୩. ଡଃ ପ୍ରସନ୍ନ କୁମାର ମିଶ୍ର
୩୮୪. ଡଃ ଚିତ୍ତରଞ୍ଜନ ମିଶ୍ର
୩୮୫. ଡଃ ଉଦୟ ଶଙ୍କର ଆଚାର୍ଯ୍ୟ
୩୮୬. ଡଃ ଉମା ଚରଣ ମହାନ୍ତି
୩୮୭. ଡଃ ଧୀରେନ୍ଦ୍ର ଚନ୍ଦ୍ର ପାତ୍ର
୩୮୮. ଡାঃ ଗୁରୁପ୍ରସାଦ ମହାନ୍ତି
୩୮୯. ଶ୍ରୀ ପ୍ରସନ୍ନ କୁମାର ନାୟକ
୩୯୦. ଶ୍ରୀ ସଞ୍ଜୟ ଆନନ୍ଦ କୁମାର ତ୍ରିପାଠୀ
୩୯୧. ଡଃ ଡଲି ସେଠୀ
୩୯୨. ଶ୍ରୀ ଅରୁଣାଞ୍ଜନ ଦାଶ
୩୯୩. ଶ୍ରୀ ରମେଶ ପ୍ରସାଦ ରାଉତ
୩୯୪. ଶ୍ରୀ ସରୋଜ କୁମାର ସିଂହ
୩୯୫. ଶ୍ରୀ ଅଶୋକ କୁମାର ଦାସ
୩୯୬. ଡାঃ ଅର୍ପିତା ପ୍ରିୟଦର୍ଶିନୀ
୩୯୭. ଶ୍ରୀମତୀ ମୀରା ଉଦ୍‌ଗାତା
୩୯୮. ଶ୍ରୀମତୀ ଶର୍ମିଷ୍ଠା ମିଶ୍ର
୩୯୯. ଡଃ ଶିଶିରକାନ୍ତ ବେହେରା
୪୦୦. ଶ୍ରୀ ମାୟାଧର ସ୍ୱାଇଁ
୪୦୧. ଡଃ ସୂର୍ଯ୍ୟମଣି ବେହେରା
୪୦୨. ଡଃ ଶରତ ଚନ୍ଦ୍ର ଦାସ
୪୦୩. ଡଃ ଜ୍ୟୋସ୍ନା ମହାପାତ୍ର
୪୦୪. ଶ୍ରୀ ବିକାଶ କୁମାର ପ୍ରସାଦ
୪୦୫. ଡଃ ବିଜୟ କୁମାର ମିଶ୍ର
୪୦୬. ଡଃ ମାଧୁରୀ ମହାପାତ୍ର
୪୦୭. ଡଃ ଶ୍ରୀକାନ୍ତ କୁମାର ପାଣିଗ୍ରାହୀ
୪୦୮. ଡାঃ ଶିବରାମ ପ୍ରସାଦ ସିଂହ
୪୦୯. ଶ୍ରୀ ରଘୁନାଥ ପ୍ରସାଦ ଦାସ
୪୧୦. ଡଃ ବଳରାମ ସାହୁ
୪୧୧. ଡାঃ ବରଦା ଚରଣ ମହାନ୍ତି
୪୧୨. ଶ୍ରୀ ବିଜୟକୃଷ୍ଣ ପଟ୍ଟନାୟକ
୪୧୩. ଡଃ ବିଜୟ କୁମାର ପାଣିଗ୍ରାହୀ
୪୧୪. ଡଃ ପ୍ରତିଭା କୁମାରୀ ନନ୍ଦ
୪୧୫. ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ
୪୧୬. ଡଃ କେ. ବିଜୟ କୁମାର
୪୧୭. ଡଃ ରାଜବଲ୍ଲଭ ମହାନ୍ତି
୪୧୮. ଡଃ ମାନସୀ ଗୋସ୍ୱାମୀ
୪୧୯. ଡଃ ଦୁର୍ଗାଶଙ୍କର ଦାସ
୪୨୦. ଶ୍ରୀମତୀ ପ୍ରୀତିରେଖା ଦାସ ପଟ୍ଟନାୟକ
୪୨୧. ଡାঃ ସତ୍ୟବ୍ରତ ନନ୍ଦ
୪୨୨. ଇଂ ଅରୁଣ କୁମାର ମିଶ୍ର
୪୨୩. ଶ୍ରୀ ସୁଜିତାଭ ଶତପଥୀ
୪୨୪. ଇଂ ନୟନ କୁମାର ଦାସ
୪୨୫. ଡାঃ ରଘୁନାଥ ବିଶ୍ୱାଳ
୪୨୬. ଇଂ ବିରଞ୍ଚି ନାରାୟଣ ମିଶ୍ର
୪୨୭. ଡଃ ପ୍ରଭାତ କୁମାର ମିଶ୍ର
୪୨୮. ଶ୍ରୀମତୀ ସଂଗୀତା ରଥ
୪୨୯. ଡଃ ନନ୍ଦନନ୍ଦନ ମହାପାତ୍ର
୪୩୦. ଡଃ ସୁଶାନ୍ତ କୁମାର ବିଶ୍ୱାଳ
୪୩୧. ଡଃ ପଦ୍ମନାଭ ବେହେରା
୪୩୨. ଡଃ ବିଚିତ୍ରାନନ୍ଦ ଗୁରୁ
୪୩୩. ଇଂ ବ୍ରଜେନ୍ଦ୍ର କିଶୋର କାନୁନ୍‌ଗୋ
୪୩୪. ଡଃ ବାଇଧର ସାହୁ
୪୩୫. ଇଂ ପୂର୍ଣ୍ଣଚନ୍ଦ୍ର ସାହୁ
୪୩୬. ଡଃ ହୁସ୍‌ନାରା ବେଗମ
୪୩୭. ଶ୍ରୀ ଗଣେଶ୍ୱର ନାଥ
୪୩୮. ଡଃ ସୁରେନ୍ଦ୍ର ନାଥ ମହାନ୍ତି
୪୩୯. ଶ୍ରୀ ସତ୍ୟାନନ୍ଦ ସାହୁ
୪୪୦. ଡଃ ପ୍ରଣବ କୁମାର ଘୋଷ
୪୪୧. ଇଂ ପ୍ରତାପ କୁମାର ସ୍ୱାଇଁ



# ସମିତିର ନିର୍ବାଚିତ କର୍ମକର୍ତ୍ତା

**ସଭାପତି**

୧.ଡଃ ଗୋକୁଳାନନ୍ଦ ମହାପାତ୍ର - ୨୦୦୭ ଠାରୁ...

**ଉପସଭାପତି**

୨.ଡଃ କୁଳମଣି ସାମଲ - ୨୦୦୭ ଠାରୁ ...

**ସଂପାଦକ**

୧. ଡଃ ରାଧାନାଥ ରଥ - ୧୯୪୯ରୁ୧୯୫୫
୨. ଡଃ ଗୋକୁଳାନନ୍ଦ ମହାପାତ୍ର - ୧୯୪୯ରୁ୧୯୫୨
୩. ଡଃ ବସନ୍ତ କୁମାର ବେହୁରା ୧୯୫୩, ୧୯୫୪
୪. ଡଃ ବିଦ୍ୟାଧର ପାଢ଼ୀ - ୧୯୫୫,୧୯୫୬
୫. ଡାଃ ଜୟକୃଷ୍ଣ ମହାନ୍ତି - ୧୯୫୬, ୧୯୫୭
୬. ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ - ୧୯୫୭, ୧୯୫୮
୭. ଡାଃ ଗୋପୀନାଥ ପ୍ରସାଦ ମହାନ୍ତି - ୧୯୫୮, ୧୯୫୯
୮. ଡଃ ହରିହର ପଟ୍ଟନାୟକ - ୧୯୫୯, ୧୯୬୦
୯. ଡଃ କୁଳମଣି ସାମଲ - ୧୯୬୦, ୧୯୬୧
୧୦. ଡଃ ପ୍ରଶାନ୍ତ କୁମାର ମିଶ୍ର - ୧୯୬୧, ୧୯୬୨
୧୧. ଡଃ ବିଦ୍ୟାଧର ନାୟକ - ୧୯୬୨, ୧୯୬୩
୧୨. ଶ୍ରୀ ଲକ୍ଷ୍ମୀନାରାୟଣ ନନ୍ଦ - ୧୯୬୩, ୧୯୬୪
୧୩. ଶ୍ରୀ ଇନ୍ଦୁ ଭୂଷଣ ମିଶ୍ର - ୧୯୬୪, ୧୯୬୫
୧୪. ଶ୍ରୀ ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି - ୧୯୬୫, ୧୯୬୬
୧୫. ଡଃ ପତିତ ପାବନ ମିଶ୍ର - ୧୯୬୬, ୧୯୬୭
୧୬. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର -୧୯୬୭, ୬୮, ୮୪, ୮୫
୧୭. ଶ୍ରୀ ସୁରେନ୍ଦ୍ରନାଥ ରାୟ - ୧୯୬୮, ୧୯୬୯
୧୮. ଶ୍ରୀ ବାମଦେବ ଦାଶ - ୧୯୬୯, ୧୯୭୦
୧୯. ଡଃ ହରିହର ତ୍ରିପାଠୀ - ୧୯୭୦, ୧୯୭୧
୨୦. ଶ୍ରୀ ବାବାଜୀ ଚରଣ ମିଶ୍ର - ୧୯୭୧, ୧୯୭୨
୨୧. ଶ୍ରୀ ଭୀମସେନ ଦାଶ - ୧୯୭୨, ୧୯୭୩
୨୨. ଶ୍ରୀ ପାର୍ବତୀ ଚରଣ ପତି - ୧୯୭୩, ୧୯୭୪
୨୩. ଡଃ ଦେବପ୍ରସାଦ ନନ୍ଦ - ୧୯୭୪, ୧୯୭୫
୨୪. ଶ୍ରୀ ବିରଜା ପ୍ରସନ୍ନ ଦାସ - ୧୯୭୫, ୧୯୭୬
୨୫. ଡାଃ ଲକ୍ଷ୍ମୀକାନ୍ତ ସାହୁ - ୧୯୭୬, ୧୯୭୭
୨୬. ଶ୍ରୀ କୃତିବାସ ମହାନ୍ତି - ୧୯୭୭
୨୭. ଶ୍ରୀ ଅନିଲ କୁମାର ପାଲ - ୧୯୭୮, ୧୯୭୯
୨୮. ଡାଃ ଧୀରେନ୍ଦ୍ର ନାଥ ଷଡ଼ଙ୍ଗୀ - ୧୯୭୮, ୧୯୭୯
୨୯. ଡାଃ ଗଙ୍ଗାଧର ସାହୁ - ୧୯୮୦
୩୦. ଡାଃ ନିତ୍ୟାନନ୍ଦ ସ୍ୱାଇଁ - ୧୯୮୦,୮୪,୮୫,୮୬
୩୧. ଡଃ ପ୍ରିୟତମା ଦେଓ - ୧୯୮୧, ୮୨, ୮୩
୩୨. ଡାଃ ରତ୍ନାକର ଦାସ - ୧୯୮୧
୩୩. ଡାଃ ଶଶିନାରାୟଣ ମହାପାତ୍ର - ୧୯୮୨, ୧୯୮୩
୩୪. ଡଃ ପଞ୍ଚାନନ ପାତ୍ର - ୧୯୮୬, ୧୯୮୭
୩୫. ଡଃ ଆଶୁତୋଷ ଦେବତା - ୧୯୮୭
୩୬. ଡାଃ ଶୈଳେଶ୍ୱର ନନ୍ଦ - ୧୯୮୮, ୮୯, ୯୦
୩୭. ଡଃ ସୁଶୀଲ କୁମାର ମହାପାତ୍ର - ୧୯୮୮,୧୯୮୯
୩୮. ଡଃ ଅଭିମନ୍ୟୁ ମିଶ୍ର - ୧୯୯୦, ୯୪, ୯୫
୩୯. ଶ୍ରୀ କଲ୍ୟାଣ ମହାପାତ୍ର - ୧୯୯୧, ୯୨, ୯୩
୪୦. ଡାଃ ଗଙ୍ଗାଧର ସୂତାର - ୧୯୯୧, ୯୨, ୯୩
୪୧. ଡାଃ ସଚ୍ଚିଦାନନ୍ଦ ଶତପଥୀ - ୧୯୯୪,୯୫,୯୭
୪୨. ଡାଃ ସୁଦର୍ଶନ ପଟ୍ଟନାୟକ - ୧୯୯୬
୪୩. ଶ୍ରୀ ପ୍ରମୋଦ କୁମାର ମହାପାତ୍ର - ୧୯୯୬, ୯୭
୪୪. ଡଃ ଗୌରାଙ୍ଗ ଚନ୍ଦ୍ର ମହାନ୍ତି - ୧୯୯୮, ୯୯, ୨୦୦୦
୪୫. ଶ୍ରୀ ନିରଞ୍ଜନ ପାତ୍ର - ୧୯୯୮, ୧୯୯୯
୪୬. ଡାଃ କିଶୋର ଚନ୍ଦ୍ର ମହାନ୍ତି - ୨୦୦୦, ୦୧
୪୭. ଡଃ ବୈଷ୍ଣବ ଚରଣ ସିଂହ - ୨୦୦୧, ୦୨, ୦୩
୪୮. ଡଃ ଶିଶିରକାନ୍ତ ବେହେରା - ୨୦୦୨, ୦୩,୦୪
୪୯. ଡଃ ବିଜୟ କୁମାର ମିଶ୍ର - ୨୦୦୪, ୦୫
୫୦. ଡଃ ସୁବାସିନୀ ଲେଙ୍କା - ୨୦୦୫, ୦୬

୫୧. ଚୌଧୁରୀ ଶରତ ଚନ୍ଦ୍ର ଦାସ - ୨୦୦୬

୫୨. ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ - ୨୦୦୭,୦୮,୦୯

### ଯୁଗ୍ମ ସଂପାଦକ

୧. ଡଃ ନାରାୟଣ ଚନ୍ଦ୍ର ପାଳ - ୨୦୦୭, ୦୮, ୦୯

### କୋଷାଧ୍ୟକ୍ଷ

୧. ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ - ୧୯୫୫-୧୯୭୯

୨. ଡଃ ପତିତପାବନ ମିଶ୍ର - ୧୯୮୦-୧୯୮୬

୩. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର - ୧୯୮୬-୧୯୮୭

୪. ଡଃ ପଞ୍ଚାନନ ପାତ୍ର - ୧୯୮୮ - ୧୯୮୯

୫. ଡଃ ପ୍ରିୟତମା ଦେଓ - ୧୯୯୦ - ୧୯୯୩

୬. ଡଃ କାଞ୍ଚନ ଆଚାର୍ଯ୍ୟ - ୧୯୯୪ - ୧୯୯୭

୭. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର - ୧୯୯୭ - ୨୦୦୪

୮. ଡଃ ବୈଷ୍ଣବ ଚରଣ ସିଂହ - ୨୦୦୫-ଅଦ୍ୟାବଧି

### ପ୍ରକାଶନ ସଂପାଦକ

୧. ଡ. ଗୋକୁଳାନନ୍ଦ ମହାପାତ୍ର —୧୯୫୦ରୁ ୧୯୬୧,
— ୧୯୭୩ରୁ ୧୯୭୬

୨. ଡ. ବିଦ୍ୟାଧର ପାଢ଼ୀ — ୧୯୬୧ ରୁ ୧୯୬୪

୩. ଡ. ଦେବକାନ୍ତ ମିଶ୍ର — ୧୯୬୫ ରୁ ୧୯୬୮

୪. ଡ. କୁଳମଣି ସାମଲ — ୧୯୬୯ ରୁ ୧୯୭୨

୫. ଡ. ନିତ୍ୟାନନ୍ଦ ସ୍ୱାଇଁ — ୨୦୦୭ ରୁ ଅଦ୍ୟାବଧି

### ସହକାରୀ ପ୍ରକାଶନ ସଂପାଦକ

୧. ଶ୍ରୀ. ଚିନ୍ତାମଣି ମିଶ୍ର — ୧୯୭୬ରୁ ୭୭, ୭୯

୨. ଡ. ନିରଞ୍ଜନ ମହାନ୍ତି — ୧୯୭୮, ୧୯୮୧

୩. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର — ୧୯୮୦

୪. ଡ. ଦେବପ୍ରସାଦ ନନ୍ଦ — ୧୯୮୨

୫. ଡ. ନିତ୍ୟାନନ୍ଦ ସ୍ୱାଇଁ — ୧୯୮୭

୬. ଡ. ଶୈଳେଶ୍ୱର ନନ୍ଦ — ୧୯୮୪ ରୁ ୧୯୮୫

(ଏହାପରେ ଆଉ କେହି ହୋଇ ନାହାନ୍ତି)

### ମୁଖ୍ୟ ସଂପାଦକ, 'ବିଜ୍ଞାନାଲୋକ'

୧. ଡ. ଗୋକୁଳାନନ୍ଦ ମହାପାତ୍ର — ୧୯୯୭ରୁ ୨୦୦୬

### ସଂପାଦକ, 'ବିଜ୍ଞାନାଲୋକ'

୧. ଡ. ଗୋକୁଳାନନ୍ଦ ମହାପାତ୍ର — ୧୯୭୭ ରୁ ୧୯୯୬

୨. ଡ. କୁଳମଣି ସାମଲ — ୧୯୯୭ ରୁ ୨୦୦୬

### ବିଭିନ୍ନ ସମୟରେ ସଂପାଦନା ମଣ୍ଡଳୀ ସଭ୍ୟ - 'ବିଜ୍ଞାନାଲୋକ'

୧. ଡ. ଦେବପ୍ରସାଦ ନନ୍ଦ

୨. ଡା. ସୁଦର୍ଶନ ପଟ୍ଟନାୟକ

୩. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର

୪. ଡ. ସୁଶୀଳା ଦେବୀ

୫. ଶ୍ରୀ କଲ୍ୟାଣ ମହାପାତ୍ର

୬. ଡା. ଯୋଗମାୟା ପଟ୍ଟନାୟକ

୭. ଡା. ଗୁରୁପ୍ରସାଦ ମହାନ୍ତି

୮. ଡ. ପ୍ରିୟତମା ଦେଓ

୯. ଡ. ବୈଷ୍ଣବ ଚରଣ ସିଂହ

୧୦. ଡା. ନିରଞ୍ଜନ ତ୍ରିପାଠୀ

୧୧. ଡ. ଗଦାଧର ମିଶ୍ର

୧୨. ଡା. ନିତ୍ୟାନନ୍ଦ ସ୍ୱାଇଁ

୧୩. ଡ. ସୁଶୀଲ କୁମାର ମହାପାତ୍ର

୧୪. ଡ. ସୁରେଶ ଚନ୍ଦ୍ର ମିଶ୍ର

୧୫. ଡ. କୁଳମଣି ସାମଲ

୧୬. ଡା. ଯୋଗୀନ୍ଦ୍ର ମୋହନ ସେନାପତି

୧୭. ଡ. କାଞ୍ଚନ ଆଚାର୍ଯ୍ୟ

୧୮. ଡା. ସଚ୍ଚିଦାନନ୍ଦ ଶତପଥୀ

୧୯. ଶ୍ରୀ ଜୟନ୍ତ କୁମାର ଦାସ

୨୦. ଡ. ଦେବକାନ୍ତ ମିଶ୍ର

୨୧. ଡ. ଅଭିମନ୍ୟୁ ମିଶ୍ର

୨୨. ଡ. ଭାସ୍କର ଦାଶ

୨୩. ଡ. ପ୍ରମୋଦ କୁମାର ମହାପାତ୍ର

୨୪. ଡ. ଆଶୁତୋଷ ଦେବତା

୨୫. ଡା. ଲକ୍ଷ୍ମୀକାନ୍ତ ସାହୁ

୨୬. ଡା. ବାସୁଦେବ କର

୨୭. ଡ. ଗୌରାଙ୍ଗ ଚନ୍ଦ୍ର ମହାନ୍ତି

୨୮. ଶ୍ରୀ ନିରଞ୍ଜନ ପାତ୍ର

**ପରିଚାଳନା ସଂପାଦକ, 'ବିଜ୍ଞାନାଲୋକ'**

୧. ଡ. ଲକ୍ଷ୍ମୀକାନ୍ତ ସାହୁ – ୧୯୮୨ରୁ ୧୯୮୩
୨. ଶ୍ରୀ ପୀତାମ୍ବର ମିଶ୍ର – ୧୯୯୭ ରୁ ୨୦୦୮

**ବାର୍ତ୍ତା ସଂପାଦକ**

୧. ଡ. ହରିହର ତ୍ରିପାଠୀ – ୧୯୭୬ ରୁ ୧୯୭୭
୨. ଡ. ଲକ୍ଷ୍ମୀକାନ୍ତ ସାହୁ – ୧୯୭୮ ରୁ ୧୯୮୩
୩. ଡ. ଶଶିନାରାୟଣ ମହାପାତ୍ର – ୧୯୮୪, ୮୫
୪. ଶ୍ରୀ ହୃଷୀକେଶ ପାଣି – ୧୯୮୬
୫. ଶ୍ରୀ ବ୍ରଜେନ୍ଦ୍ର ନାରାୟଣ ରାଉତରାୟ – ୧୯୮୭
୬. ଡ. ଆଶୁତୋଷ ଦେବତା – ୧୯୮୮,୧୯୮୯
୭. ଶ୍ରୀ ଦୟାନନ୍ଦ ତ୍ରିପାଠୀ – ୧୯୯୦
୮. ଡ. ନିରଞ୍ଜନ ତ୍ରିପାଠୀ –୧୯୯୧, ୧୯୯୨
୯. ଡ. ଆକାଶ ସାହୁ –୧୯୯୩
୧୦. ଶ୍ରୀ ବିଷ୍ଣୁଚରଣ ଜେନା – ୧୯୯୪, ୯୫, ୦୨, ୦୩
୧୧. ଡ. ପ୍ରମୋଦ କୁମାର ମହାପାତ୍ର – ୧୯୯୬, ୧୯୯୮, ୧୯୯୯, ୨୦୦୪
୧୨. ଶ୍ରୀ ନିରଞ୍ଜନ ପାତ୍ର –୧୯୯୭, ୨୦୦୦, ୨୦୦୧
୧୩. ଡ. ବିଜୟ କୁମାର ମିଶ୍ର – ୨୦୦୫, ୨୦୦୬

(ଏହାପରେ ପଦ ଉଚ୍ଛେଦ ହେଲା)

**ବିଦ୍ୟାଳୟ ସଂଯୋଜକ**

୧. ଡ. ଲକ୍ଷ୍ମୀକାନ୍ତ ସାହୁ – ୧୯୮୪
୨. ଶ୍ରୀ କଲ୍ୟାଣ ମହାପାତ୍ର– ୧୯୮୫ ୯୦, ୯୪, ୯୫, ୯୮
୩. ଶ୍ରୀ ପ୍ରମୋଦ କୁମାର ମିଶ୍ର – ୧୯୮୮, ୧୯୮୯
୪. ଶ୍ରୀ ମହେନ୍ଦ୍ର କୁମାର କାୟସ୍ଥ – ୧୯୯୦ ରୁ ୧୯୯୩
୫. ଶ୍ରୀ ବିଷ୍ଣୁ ଚରଣ ଜେନା – ୧୯୯୧ ରୁ ୯୩, ୯୮
୬. ଶ୍ରୀ ଗୌରୀଶ୍ୟାମ ଦାସ – ୧୯୯୪ ରୁ୧୯୯୭
୭. ଚୌଧୁରୀ ଶରତ ଚନ୍ଦ୍ର ଦାସ – ୧୯୯୪, ୧୯୯୫
୮. ଶ୍ରୀ ବିଶ୍ୱନାଥ ନାୟକ – ୧୯୯୬, ୧୯୯୭
୯. ଶ୍ରୀ ନିରଞ୍ଜନ ପାତ୍ର – ୧୯୯୯ ରୁ ୨୦୦୫
୧୦. ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ – ୨୦୦୬
୧୧. ଡ. ନାରାୟଣ ଚନ୍ଦ୍ର ପାଳ – ୨୦୦୬

(ଏହାପରେ ପଦ ଉଚ୍ଛେଦ ହେଲା)

**ପାଠାଗାର ସଂପାଦକ**

୧. ଶ୍ରୀ ଗୌରୀଶ୍ୟାମ ଦାସ – ୧୯୯୫
୨. ଶ୍ରୀ ସାଧୁଚରଣ ପ୍ରଧାନ – ୧୯୯୬
୩. ଶ୍ରୀ ନିରଞ୍ଜନ ପାତ୍ର – ୧୯୯୬
୪. ଡ. ରବିରଞ୍ଜନ ସାହୁ – ୧୯୯୭
୫. ଶ୍ରୀ ମହେନ୍ଦ୍ର କୁମାର କାୟସ୍ଥ – ୧୯୯୭
୬. ଶ୍ରୀ ବିଶ୍ୱନାଥ ନାୟକ – ୧୯୯୮, ୧୯୯୯
୭. ଚୌଧୁରୀ ଶରତ ଚନ୍ଦ୍ର ଦାସ – ୧୯୯୮, ୧୯୯୯
୮. ଡ. ସଚ୍ଚିଦାନନ୍ଦ ଶତପଥୀ – ୨୦୦୦ ରୁ ୨୦୦୫
୯. ଡ. ଶିଶିରକାନ୍ତ ବେହେରା – ୨୦୦୬

(ଏହାପରେ ପଦ ଉଚ୍ଛେଦ ହେଲା)



# ସମ୍ପାଦକମାନଙ୍କ ସଂକ୍ଷିପ୍ତ ପରିଚୟ

**୧. ପ୍ରଫେସର ଡକ୍ଟର ରାଧାନାଥ ରଥ (୧୯୪୯-୧୯୫୫)**



ଅବସରପ୍ରାପ୍ତ ପ୍ରଫେସର, ମନୋବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ । ଗଞ୍ଜାମ ଜିଲ୍ଲାର ତଳରାମ ପଲ୍ଲୀ ଗ୍ରାମରେ ୧୯୨୦ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସୁବକ୍ତା ଓ ସମାଜ ସେବୀ । ଶତାଧିକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ପ୍ରାୟ ୩୫ ଖଣ୍ଡ ପୁସ୍ତକର ରଚୟିତା । ବହୁ ସଂସ୍ଥା ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସଂଶ୍ଲିଷ୍ଟ । ଉଚ୍ଚମାନର ଲେଖାପାଇଁ ସୋଭିଏତ୍ ଦେଶ ପୁରସ୍କାର ଓ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ । ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସଦସ୍ୟ ଓ ପ୍ରଥମ ସଂପାଦକ ।

**ବର୍ତ୍ତମାନର ଠିକଣା** : ସାଆନ୍ତସାହି, କଟକ – ୭୫୩୦୦୧, ଫୋନ୍ – ୨୬୧୫୮୩୩ ।

**୨. ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର (୧୯୪୯-୧୯୫୨)**



ରେଭେନ୍ସା କଲେଜର ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ । ଭଦ୍ରକ ଜିଲ୍ଲାର କୁଆଁସ ଗ୍ରାମରେ ୧୯୨୨ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଗବେଷକ, ସୁବକ୍ତା ଓ ସମାଲୋଚକ । ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ରଚନାର ଦିଗ୍‌ଦର୍ଶକ । ବିଗତ ଅର୍ଦ୍ଧଶତାବ୍ଦୀ ଧରି ଲୋକପ୍ରିୟ ଓଡ଼ିଆ ବିଜ୍ଞାନ ସାହିତ୍ୟ ରଚନା ସହିତ ଜଡ଼ିତ । ଶତାଧିକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ, ୨୦ଟିରୁ ଅଧିକ ପାଠ୍ୟପୁସ୍ତକ ଓ ପ୍ରାୟ ୧୦୦ ଖଣ୍ଡ ବିଜ୍ଞାନ ପୁସ୍ତକର ରଚୟିତା । ଦେଶ ବିଦେଶର ବହୁ ସଂସ୍ଥା ସହିତ ସଂଶ୍ଳିଷ୍ଟ । ଲୋକପ୍ରିୟ ବିଜ୍ଞାନ ରଚନାପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ, ନୀଳଶୈଳ, ମନପବନ,ବିଜ୍ଞାନ ଓ ପରିବେଶ ବିକାଶ ସମିତି, ଉତ୍କଳ ସାହିତ୍ୟ ସମାଜ ପ୍ରଭୃତି ତରଫରୁ ପୁରସ୍କୃତ । ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସଦସ୍ୟ ଓ ପ୍ରଥମ ଯୁଗ୍ମ ସଂପାଦକ । ସମିତିର ବିଜ୍ଞାନ ପତ୍ରିକା 'ବିଜ୍ଞାନାଲୋକ' ର ସର୍ବପ୍ରଥମ ସଂପାଦକ ଓ ମୁଖ୍ୟ ସଂପାଦକ ।

**ବର୍ତ୍ତମାନର ଠିକଣା** : ଆମ୍ରପଲ୍ଲୀ, ଦୋଳମୁଣ୍ଡାଇ, କଟକ – ୭୫୩୦୦୯, ଫୋନ୍ ୨୬୧୦୨୫୬

**୩. ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରା (୧୯୫୩-୫୪)**

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାଣିବିଜ୍ଞାନ ବିଭାଗର ଅବସର ପ୍ରାପ୍ତ ମୁଖ୍ୟ ଅଧ୍ୟାପକ ଓ ପୂର୍ବତନ କୁଳପତି । ଜଗତ୍‌ସିଂହପୁର ଜିଲ୍ଲାର ବିଲିପଡ଼ା ଗ୍ରାମରେ ୧୯୨୨ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଗବେଷକ ଓ ସୁବକ୍ତା । ବହୁ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ପୁସ୍ତକର ରଚୟିତା । ବହୁ ବିଜ୍ଞାନ ସଂସ୍ଥା ସହିତ ସଂଶ୍ଳିଷ୍ଟ ଓ ଉତ୍ତମ ରଚନା ତଥା ଗବେଷଣାପାଇଁ ବହୁବାର ପୁରସ୍କୃତ ।



ଶ୍ରେଷ୍ଠ ବୈଜ୍ଞାନିକ ଭାବରେ ଓଡ଼ିଶା ବିଜ୍ଞାନ ଏକାଡେମୀ ତରଫରୁ ସମ୍ମାନିତ ।

**ବର୍ତ୍ତମାନର ଠିକଣା** – ୩୦୦, ଖାରବେଳ ନଗର, ୟୁନିଟ୍ – ୩, ଭୁବନେଶ୍ୱର ୧, ଫୋନ୍ – ୨୪୦୪୯୪୯ ।

**୪. ପଫେସର ଡକ୍ଟର ବିଦ୍ୟାଧର ପାଢ଼ୀ (୧୯୫୫-୧୯୫୬)**



ଉତ୍କଳ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର । କେନ୍ଦୁଝର ଜିଲ୍ଲାର ପଞ୍ଚୁପଲ୍ଲୀ ଗ୍ରାମରେ ୧୯୨୩ମସିହାରେ ଜନ୍ମ ଓ ଭୁବନେଶ୍ୱର ବାସଭବନରେ ୧୯୯୭ ମସିହାରେ ଦେହତ୍ୟାଗ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସୁବକ୍ତା, ଗବେଷକ ଓ ସଂଗଠକ । ବହୁ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ପୁସ୍ତକର ରଚୟିତା । ବହୁ ବିଜ୍ଞାନ ସଂସ୍ଥା ସହିତ ସଂଶ୍ଳିଷ୍ଟ । ଉତ୍କୃଷ୍ଟ ରଚନାପାଇଁ ବିଷୁବ ପୁରସ୍କାର ଓ ନିତ୍ୟାନନ୍ଦ ସ୍ମାରକୀ ବିଜ୍ଞାନ ସାହିତ୍ୟ ପୁରସ୍କାରଦ୍ୱାରା ଭୂଷିତ ।

## ୫. ପ୍ରଫେସର ଡାକ୍ତର ଜୟକୃଷ୍ଣ ମହାନ୍ତି ( ୧୯୫୬-୧୯୫୭)



ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଫାର୍ମାକୋଲୋଜି ବିଭାଗର ଅବସରପ୍ରାପ୍ତ ପ୍ରଫେସର । କଟକ ଜିଲ୍ଲାର ବାଡ଼ିପଡ଼ିଆ ଗ୍ରାମରେ ୧୯୦୯ ମସିହାରେ ଜନ୍ମ ଓ କଟକର ' ବିଜ୍ଞାନପୁରୀ' ବାସଭବନରେ ୧୯୯୪ ମସହାରେ ଦେହତ୍ୟାଗ । ଜଣେ ଉଚ୍ଚକୋଟୀର ଗବେଷକ ଓ ' ମହାନ୍ତି ଟେଷ୍ଟ'ର ଉଦ୍‌ଭାବକ । ବହୁ ପ୍ରବନ୍ଧ ଓ ପୁସ୍ତକର ରଚୟିତା । ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ଆମେରିକାର Winthrop ପୁରସ୍କାର ଓ United Kingdom ପୁରସ୍କାର ସମେତ ବହୁ ଜାତୀୟ ଓ ଅନ୍ତର୍ଜାତୀୟ ସଂସ୍ଥା ତରଫରୁ ପୁରସ୍କୃତ । ବହୁ ବିଜ୍ଞାନ ସଂସ୍ଥା ସହିତ ସଂଶ୍ଳିଷ୍ଟ ।

## ୬. ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ (୧୯୫୭, ୧୯୫୮)



ରେଭେନ୍ସା କଲେଜର ଭୂଗୋଳ ବିଭାଗର ଅବସରପ୍ରାପ୍ତ ଅଧ୍ୟାପକ । ମୟୂରଭଞ୍ଜ ଜିଲ୍ଲାର ବୀରେଶ୍ୱରପୁର ଗ୍ରାମରେ ୧୯୨୧ ମସିହାରେ ଜନ୍ମ । ଭୂଗୋଳ ବିଷୟରେ ଓଡ଼ିଶାର ସର୍ବପ୍ରଥମ ଏମ୍.ଏ. । ବହୁ ପ୍ରବନ୍ଧ ଓ ପ୍ରାୟ ୫ଖଣ୍ଡ ପୁସ୍ତକର ରଚୟିତା । ୧୯୫୫ ଠାରୁ ୧୯୭୯ ପର୍ଯ୍ୟନ୍ତ ବିଜ୍ଞାନ ପ୍ରଚାର ସମିତିର କୋଷାଧକ୍ଷ ଭାବେ କାର୍ଯ୍ୟ ସଂପାଦନ ।

## ୭. ପ୍ରଫେସର ଡାକ୍ତର ଗୋପୀନାଥ ପ୍ରସାଦ ମହାନ୍ତି (୧୯୫୮-୫୯)



ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର F.M.T.ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ ଓ ଓଡ଼ିଶା ସରକାରଙ୍କ ମେଡ଼ିକାଲ ଶିକ୍ଷା ଓ ତାଲିମ ବିଭାଗର ପୂର୍ବତନ ନିର୍ଦ୍ଦେଶକ । ଭଦ୍ରକ ଜିଲ୍ଲା କୁଆଁସମଡ଼ିଆ ଗ୍ରାମରେ ୧୯୧୯ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଉଚ୍ଚକୋଟୀର ଗବେଷକ ଓ ଦକ୍ଷ ପ୍ରଶାସକ । ଚିକିତ୍ସା ବିଜ୍ଞାନ ସମ୍ବନ୍ଧୀୟ ଅନେକ ପ୍ରବନ୍ଧର ରଚୟିତା । ବହୁ ବିଜ୍ଞାନ ସଂସ୍ଥା ସହିତ ସଂଶ୍ଳିଷ୍ଟ ।

## ୮. ପ୍ରଫେସର ଡକ୍ଟର ହରିହର ପଟ୍ଟନାୟକ (୧୯୫୯-୬୦)



ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ ଓ ପୂର୍ବତନ କୁଳପତି । ଯାଜପୁର ଜିଲ୍ଲାର ବଳରାମପୁର ଗ୍ରାମରେ ୧୯୨୪ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଗବେଷକ ଓ ଦକ୍ଷ ପ୍ରଶାସକ । ବହୁ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ପ୍ରାୟ ୧୫ଖଣ୍ଡ ପୁସ୍ତକର ରଚୟିତା । ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମୃତି ପୁରସ୍କାର, ବିଜ୍ଞାନାଲୋକ କାଂସ୍ୟଜୟନ୍ତୀ ପୁରସ୍କାର, ପ୍ରାଣକୃଷ୍ଣ ପରିଜା ପୁରସ୍କାର, ନିତ୍ୟାନନ୍ଦ ସ୍ମାରକୀ ବିଜ୍ଞାନ ସାହିତ୍ୟ ପୁରସ୍କାର ସମେତ ଅନ୍ୟାନ୍ୟ ବହୁ ସମ୍ମାନର ଅଧିକାରୀ । ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ।

## ୯. ପ୍ରଫେସର ଡକ୍ଟର କୁଳମଣି ସାମଲ (୧୯୬୦, ୧୯୬୧)



ବୁର୍ଲାସ୍ଥିତ ବିଶ୍ୱବିଦ୍ୟାଳୟ ଇଂଜିନିୟରିଂ କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ । କଟକ ଜିଲ୍ଲା ନୂଆଗାଁ ଗ୍ରାମରେ ୧୯୨୯ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଉଚ୍ଚକୋଟୀର ଗବେଷକ, ସୁବକ୍ତା, ସମାଲୋଚକ ଓ ଦକ୍ଷ ସମ୍ପାଦକ । ୩୦୦ରୁ ଉର୍ଦ୍ଧ୍ୱ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ୨୦ ଖଣ୍ଡ ପାଠ୍ୟପୁସ୍ତକ ସମେତ ପ୍ରାୟ ୫୦ ଖଣ୍ଡ ପୁସ୍ତକର ଲେଖକ, ଅନୁବାଦକ ଓ ସଂପାଦକ । 'ବିଜ୍ଞାନ ଦିଗନ୍ତ' ଓ 'ବିଜ୍ଞାନାଲୋକ' ପରି ବିଜ୍ଞାନ ପତ୍ରିକାର ସଂପାଦକ । ଜନପ୍ରିୟ ବିଜ୍ଞାନ ଲେଖା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ, ସଂସାର ସ୍ମାରକୀ ପୁରସ୍କାର, ବିଜ୍ଞାନାଲୋକ କାଂସ୍ୟ ଜୟନ୍ତୀ ପୁରସ୍କାର, ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର, ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମୃତି ପୁରସ୍କାର, ପ୍ରାଣକୃଷ୍ଣ ପରିଜା ବିଜ୍ଞାନ ସାହିତ୍ୟ ପୁରସ୍କାର ସମେତ ଅନ୍ୟାନ୍ୟ ବହୁ ସମ୍ମାନର ଅଧିକାରୀ । ବହୁ ଜାତୀୟ ଓ ରାଜ୍ୟସ୍ତରୀୟ ବିଜ୍ଞାନ ଅନୁଷ୍ଠାନର ସକ୍ରିୟ ସଭ୍ୟ । ବିଜ୍ଞାନ ପ୍ରଚାର ସମିତିର ମୁଖ୍ୟ ଉପଦେଷ୍ଟା ।

**ବର୍ତ୍ତମାନର ଠିକଣା** – ସାମଲ ନିବାସ, ମଝିସାହି, ଯୋବ୍ରା, କଟକ–୭୫୩୦୦୩, ଫୋନ–୨୬୪୭୩୧୦, ମୋବାଇଲ - ୯୮୬୧୧୯୩୮୮୮

**୧୦. ଡକ୍ଟର ପ୍ରଶାନ୍ତ କୁମାର ମିଶ୍ର (୧୯୬୧, ୧୯୬୨)**

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ବିଭାଗର ପୂର୍ବତନ ମୁଖ୍ୟ ପ୍ରଫେସର । ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକାରେ ଅବସ୍ଥାପିତ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଉଚ୍ଚକୋଟୀର ଗବେଷକ । ବହୁ ଗବେଷଣାମୂଳକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**୧୧. ଡକ୍ଟର ବିଦ୍ୟାଧର ନାୟକ (୧୯୬୨, ୧୯୬୩)**



ଖଡ଼ଗପୁରର ଇଣ୍ଡିଆନ୍ ଇନ୍ଷ୍ଟିଚ୍ୟୁଟ ଅଫ୍ ଟେକ୍ନୋଲୋଜିର ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର । ଯାଜପୁର ଜିଲ୍ଲାର ବୋଡ଼ାଳତାଙ୍ଗ ଗ୍ରାମରେ ୧୯୨୮ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଉଚ୍ଚକୋଟୀର ଗବେଷକ । ଗବେଷଣା ନିମିତ୍ତ ବହୁବାର ବିଦେଶ ଭ୍ରମଣ । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**୧୨. ଶ୍ରୀ ଲକ୍ଷ୍ମୀନାରାୟଣ ନନ୍ଦ (୧୯୬୩, ୧୯୬୪)**



ଓଡ଼ିଶା ଡ୍ରଗ୍ ଟେଷ୍ଟିଂ ଲାବୋରେଟୋରିଜ୍‌ର ଅବସରପ୍ରାପ୍ତ ସାଇଣ୍ଟିଫିକ୍ ଅଫିସର । କଟକ ଜିଲ୍ଲାର ବାଙ୍କିଠାରେ ୧୯୨୭ ମସିହାରେ ଜନ୍ମ । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । ଜଣେ ଉତ୍ତମ ସଂଗଠକ ।

**୧୩. ଶ୍ରୀ ଇନ୍ଦୁଭୂଷଣ ମିଶ୍ର (୧୯୬୪, ୧୯୬୫)**

ରେଭେନ୍ସା କଲେଜର ରସାୟନ ବିଜ୍ଞାନ ବିଭାଗର ପୂର୍ବତନ ଅଧ୍ୟାପକ । ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକାରେ ଅବସ୍ଥାପିତ ।

**୧୪. ମେଜର ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି (୧୯୬୫, ୧୯୬୬)**



ରସାୟନ ବିଜ୍ଞାନର ଅବସରପ୍ରାପ୍ତ ଅଧ୍ୟାପକ ଓ ବାରିପଦା ଏମ୍. ପି. ସି. କଲେଜର ପୂର୍ବତନ ଅଧ୍ୟକ୍ଷ । କଟକ ଜିଲ୍ଲା ନିମେଇସାପୁର ଗ୍ରାମରେ ୧୯୨୮ ମସିହାରେ ଜନ୍ମ । ବିଭିନ୍ନ ପତ୍ର ପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । ଡାକ ଟିକେଟ୍ ସଂଗ୍ରହ, ମୁଦ୍ରା ସଂଗ୍ରହ ଓ ଉଦ୍ୟାନ ରଚନା ବିଦ୍ୟାରେ ପାରଙ୍ଗମ ।

**୧୫. ପ୍ର. ଡକ୍ଟର ପତିତପାବନ ମିଶ୍ର (୧୯୬୬, ୧୯୬୭)**



ରେଭେନ୍ସା କଲେଜ ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ ପ୍ରଫେସର । ପୁରୀ ଜିଲ୍ଲାର ନିମାପଡ଼ାଠାରେ ୧୯୩୨ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଉଚ୍ଚକୋଟୀର ଗବେଷକ । ବିଭିନ୍ନ ପତ୍ର ପତ୍ରିକାରେ କେତେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ ଓ ପ୍ରାୟ ୬ଖଣ୍ଡ ପୁସ୍ତକର ରଚୟିତା । ୧୯୮୦ ଠାରୁ ୧୯୮୬ ପର୍ଯ୍ୟନ୍ତ ବିଜ୍ଞାନ ପ୍ରଚାର ସମିତିର କୋଷାଧ୍ୟକ୍ଷ । କେତେକ ବିଶ୍ୱବିଦ୍ୟାଳୟର ଭିଜିଟିଂ ପ୍ରଫେସର । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ ।

**ବର୍ତ୍ତମାନର ଠିକଣା** – ୧୪୦, ବାପୁଜୀନଗର, ଭୁବନେଶ୍ୱର

**୧୬. ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର (୧୯୬୭, ୧୯୬୮, ୧୯୮୪, ୧୯୮୫)**



ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । କଟକର ରାଣୀହାଟଠାରେ ୧୯୪୧ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସଂଗଠକ । ଅନେକ ବିଜ୍ଞାନ ପ୍ରବନ୍ଧ ଓ ପ୍ରାୟ ୧୫ଖଣ୍ଡି ବିଜ୍ଞାନ ପାଠ୍ୟପୁସ୍ତକର ରଚୟିତା । ୧୯୮୬ ଠାରୁ ୧୯୮୭ ଓ ୧୯୯୭ ଠାରୁ ୨୦୦୪ ପର୍ଯ୍ୟନ୍ତ ବିଜ୍ଞାନ ପ୍ରଚାର ସମିତିର କୋଷାଧ୍ୟକ୍ଷ ।

**୧୭. ଶ୍ରୀ ସୁରେନ୍ଦ୍ର ନାଥ ରାୟ (୧୯୬୮, ୧୯୬୯)**

ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ପୂର୍ବତନ ଅଧ୍ୟାପକ । ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକାରେ ଅବସ୍ଥାପିତ ।

**୧୮. ଶ୍ରୀ ବାମଦେବ ଦାଶ (୧୯୬୯, ୧୯୭୦)**



ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ଅଧ୍ୟାପକ । ପୁରୀର ମାଟିମଣ୍ଡପ ସାହିଠାରେ ୧୯୩୫ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସଂଗଠକ । କେତେକ ବିଜ୍ଞାନ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**ବର୍ତ୍ତମାନର ଠିକଣା** : ମାଟିମଣ୍ଡପସାହି, ପୁରୀ – ୭୫୨୦୦୧, ଫୋନ୍–(୦୬୭୫୨) ୨୩୫୪୭

**୧୯. ଡକ୍ଟର ହରିହର ତ୍ରିପାଠୀ ( ୧୯୭୦, ୧୯୭୧)**



ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନର ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । ଗଞ୍ଜାମ ଜିଲ୍ଲାର ନଳୀନାକ୍ଷପୁର ଶାସନ ଗ୍ରାମରେ ୧୯୪୩ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଉଚ୍ଚକୋଟୀର ଗବେଷକ । ବହୁ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ବିଜ୍ଞାନ ଓ ରସାୟନ ବିଜ୍ଞାନ ସମ୍ବନ୍ଧୀୟ କେତେକ ପାଠ୍ୟପୁସ୍ତକର ରଚୟିତା ।

**୨୦. ଡଃ ବାବାଜୀ ଚରଣ ମିଶ୍ର (୧୯୭୧-୧୯୭୨)**



ଭୁବନେଶ୍ୱର ବି.ଜେ.ବି. କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । ୧୯୪୫ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସଂଗଠକ । କେତେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ପଦାର୍ଥ ବିଜ୍ଞାନ ସମ୍ବନ୍ଧୀୟ କେତେକ ପୁସ୍ତକର ମଧ୍ୟ ରଚୟିତା ।

**୨୧. ଶ୍ରୀ ଭୀମସେନ ଦାଶ (୧୯୭୨, ୧୯୭୩)**



ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । କେନ୍ଦ୍ରାପଡ଼ା ଜିଲ୍ଲାର ନରସିଂହପୁର ଗ୍ରାମରେ ୧୯୪୪ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ବିଜ୍ଞାନ ତଥା ଆଧ୍ୟାତ୍ମିକ ଚେତନାର ପ୍ରଗଳ୍ଭ ବକ୍ତା । ଶ୍ରୀ ସତ୍ୟସାଇ ସେବା ସଂଗଠନର ଜଣେ ସକ୍ରିୟ କର୍ମୀ । ଆକାଶବାଣୀର ବିଜ୍ଞାନ କାର୍ଯ୍ୟକ୍ରମରେ ନିୟମିତ ଅଂଶଗ୍ରହଣ ।

**ବର୍ତ୍ତମାନର ଠିକଣା** : ମହାନଦୀ ବିହାର, କଟକ -୪ ।

**୨୨. ଡଃ ପାର୍ବତୀ ଚରଣ ପତି (୧୯୭୩, ୧୯୭୪)**



ଭୁବନେଶ୍ୱର ରମାଦେବୀ ମହିଳା ମହାବିଦ୍ୟାଳୟର ପ୍ରାଣିବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । କେନ୍ଦ୍ରାପଡ଼ା ଜିଲ୍ଲାର ମହୀପାଳ ଗ୍ରାମରେ ୧୯୪୯ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଗବେଷକ । କେତେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**୨୩. ଡଃ ଦେବପ୍ରସାଦ ନନ୍ଦ (୧୯୭୪, ୧୯୭୫)**



ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । ଜଗତ୍‌ସିଂହପୁର ଜିଲ୍ଲାର ମଧୁସୂଦନପୁର ଶାସନ ଗ୍ରାମରେ ୧୯୪୫ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସୁଗବେଷକ ଓ ବକ୍ତା । ବିଭିନ୍ନ ପତ୍ର-ପତ୍ରିକାରେ ଅନେକ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । ଆକାଶ-ବାଣୀର ବିଭିନ୍ନ ବିଜ୍ଞାନ ସମ୍ପର୍କିତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ ।

**୨୪. ଶ୍ରୀ ବିରଜା ପ୍ରସନ୍ନ ଦାସ (୧୯୭୫, ୧୯୭୬)**



ଭୁବନେଶ୍ୱର ବି.ଜେ.ବି. ମହାବିଦ୍ୟା-ଳୟର ପଦାର୍ଥ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । କେନ୍ଦ୍ରାପଡ଼ା ଜିଲ୍ଲାର ଆହୁଲି ଗ୍ରାମରେ ୧୯୪୮ ମସିହାରେ ଜନ୍ମ । କେତେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସଂଗଠକ ।

**୨୫. ପ୍ର. ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ (୧୯୭୬, ୧୯୭୭)**



ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଅବସରପ୍ରାପ୍ତ ଅଧକ୍ଷ । ଜଣେ ବିଶିଷ୍ଟ ମୂତ୍ର-ଶଲ୍ୟଚିକିତ୍ସା ବିଶାରଦ । କୋରାପୁଟ ଜିଲ୍ଲାର ଜୟପୁରଠାରେ ୧୯୪୩ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସଂଗଠକ । ବିଭିନ୍ନ ପତ୍ର ପତ୍ରିକାରେ ପ୍ରାୟ ୫୦ଟି ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପ୍ରବନ୍ଧ ପ୍ରକାଶିତ ଓ ମୂତ୍ରରୋଗ ସମ୍ବନ୍ଧରେ କେତେକ ପୁସ୍ତକର ରଚୟିତା । ୧୯୮୬ ମସିହାରେ ବୁର୍ଲାଠାରେ ଓଡ଼ିଶାର ସର୍ବପ୍ରଥମ ବୃକ୍କ ପରିରୋପଣ କରିବାର ଗୌରବ ଲାଭ । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ୧୯୮୨ ଓ ୧୯୮୩ ଦୁଇ ବର୍ଷ ଧରି 'ବିଜ୍ଞାନାଲୋକ'ର ପରିଚାଳନା ସଂପାଦକର ଦାୟିତ୍ୱ ସଂପାଦନ ।

**ବର୍ତ୍ତମାନର ଠିକଣା** : ପାଟରାସାହି, କଲେଜଛକ, କଟକ - ୭୫୩୦୦୩, ଫୋନ୍- ୨୬୧୩୨୮୨, ମୋ- ୯୪୩୭୦୨୮୭୫୫ ।

**୨୬. ଶ୍ରୀ କୃତ୍ତିବାସ ମହାନ୍ତି (୧୯୭୭)**



ସମ୍ବଲପୁରର ନେତାଜୀ ସୁଭାଷ ଚନ୍ଦ୍ର ବୋଷ କଲେଜର ଅବସରପ୍ରାପ୍ତ ଅଧକ୍ଷ ଓ ପଦାର୍ଥ ବିଜ୍ଞାନର ପୂର୍ବତନ ପ୍ରାଧ୍ୟାପକ । ୧୯୪୧ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଦକ୍ଷ ପ୍ରଶାସକ । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**ବର୍ତ୍ତମାନର ଠିକଣା :** ପ୍ଲଟ ନମ୍ବର ୭୬, ଶହୀଦନଗର, ଭୁବନେଶ୍ୱର ।

**୨୭. ଡଃ ଅନିଲ କୁମାର ପାଲ (୧୯୭୮, ୧୯୭୯)**



ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ରେଜିଷ୍ଟ୍ରାର ଓ ଜିଓଲୋଜି ବିଭାଗର ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ । କଲିକତାଠାରେ ୧୯୪୪ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଗବେଷକ । ଉତ୍କଳ ବିଶ୍ୱ ବିଦ୍ୟାଳୟ ଶିକ୍ଷକ ସଂଘର ପୂର୍ବତନ ସମ୍ପାଦକ ସହିତ ଆହୁରି ବହୁ ପଦପଦବୀରେ ଅବସ୍ଥାପିତ । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଗୋଟିଏ ଇଂରାଜୀ ବିଜ୍ଞାନ ପୁସ୍ତକର ରଚୟିତା । ବହୁ ସଂପାନ ଓ କର୍ମଶାଳାରେ ଅଂଶଗ୍ରହଣ ।

**୨୮. ଡା. ଧୀରେନ୍ଦ୍ରନାଥ ଷଡ଼ଙ୍ଗୀ (୧୯୭୮, ୧୯୭୯)**

ଜଣେ ବିଶିଷ୍ଟ ଭେଷଜ ବିଶାରଦ । ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଅଧୀନରେ ଭେଷଜ ବିଶେଷଜ୍ଞ ଭାବରେ କାର୍ଯ୍ୟରତ । ଜଣେ ସୁଚିକିତ୍ସକ ଓ ସମାଜସେବୀ ।

**୨୯. ଡକ୍ଟର ଗଙ୍ଗାଧର ସାହୁ (୧୯୮୦)**



ଭୁବନେଶ୍ୱର ବି.ଜେ.ବି. କଲେଜର ଅବସରପ୍ରାପ୍ତ ଅଧକ୍ଷ ଓ ରସାୟନ ବିଜ୍ଞାନ ବିଭାଗର ପୂର୍ବତନ ପ୍ରାଧ୍ୟାପକ । ଅନୁଗୁଳ ଜିଲ୍ଲାର ବଳରାମପୁର ଗ୍ରାମରେ ୧୯୩୫ ମସିହାରେ ଜନ୍ମ । ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ପୂର୍ବତନ ସଭାପତି ଓ ଇନ୍ଦିରା ଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟର ଓଡ଼ିଶା ପାଇଁ ପୂର୍ବତନ ଆଞ୍ଚଳିକ ନିର୍ଦ୍ଦେଶକ । ବହୁ ଜନପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ରସାୟନ ବିଜ୍ଞାନର କେତେକ ପାଠ୍ୟପୁସ୍ତକର ରଚୟିତା ।

**ବର୍ତ୍ତମାନର ଠିକଣା :** ଟି. ଆଇ. ସି. ବି.ଡ଼ି.ଏ ଡୁପ୍ଲେକ୍ସ କଲୋନୀ, ବରମୁଣ୍ଡା, ଭୁବନେଶ୍ୱର– ୩, ଫୋନ– ୨୫୫୧୨୭୬ ।

**୩୦. ଡା. ନିତ୍ୟାନନ୍ଦ ସ୍ୱାଇଁ (୧୯୮୦, ୧୯୮୪-୧୯୮୬)**



କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଜୀବରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ସହଯୋଗୀ ପ୍ରଫେସର । ଜଗତ୍‌ସିଂହପୁର ଜିଲ୍ଲାର କଣିଆ ଗ୍ରାମରେ ୧୯୪୩ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଲୋକପ୍ରିୟ ବିଜ୍ଞାନର ସୁଲେଖକ, ପ୍ରଗଳ୍ଭ ବକ୍ତା ଓ ଦକ୍ଷ ସମ୍ପାଦକ । ଏକହଜାରରୁ ଅଧିକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ପ୍ରାୟ ଷାଠିଏ ଖଣ୍ଡ ପୁସ୍ତକର ରଚୟିତା । ଉତ୍କୃଷ୍ଟ ରଚନା ପାଇଁ ବିଷୁବ ପୁରସ୍କାର,ପଠାଣି ସାମନ୍ତ ପୁରସ୍କାର,ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମୃତି ପୁରସ୍କାର, ସଂସାର ସ୍ମାରକୀ ପୁରସ୍କାର, ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର ପରି ବହୁ ପୁରସ୍କାରରେ ପୁରସ୍କୃତ । ପ୍ରାୟ କୋଡ଼ିଏଟି ବିଜ୍ଞାନ ସଂସ୍ଥାର ଆଜୀବନ ସଭ୍ୟ । ବିଭିନ୍ନ ବିଜ୍ଞାନ ପ୍ରଦର୍ଶନୀ ଓ ବିଦ୍ୟାଳୟ ବିଜ୍ଞାନ କାର୍ଯ୍ୟକ୍ରମର ସଫଳ ପ୍ରଶିକ୍ଷକ ।

**ବର୍ତ୍ତମାନର ଠିକଣା :** 'ଅଭୀପ୍ସା', ସେକ୍ଟର – ୬, ପ୍ଲଟ୍ ନଂ– ୧୧୩୧, ମର୍କତନଗର, ବିଡ଼ାନାସୀ, କଟକ – ୭୫୩୦୦୨, ଫୋନ୍ – ୨୬୦୩୬୦୧ ।

**୩୧. ଡକ୍ଟର ପ୍ରିୟତମା ଦେଓ (୧୯୮୧-୧୯୮୩)**



ରେଭେନ୍ସା କଲେଜର ଅବସରପ୍ରାପ୍ତ ପ୍ରଥମ ମହିଳା ଅଧକ୍ଷ । କେନ୍ଦୁଝରଗଡ଼ ଠାରେ ୧୯୪୧ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପିକା, ସୁବକ୍ତା ଓ ଦକ୍ଷ ପ୍ରଶାସିକା ହିସାବରେ ଜଣାଶୁଣା । ବିଭିନ୍ନ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । 'ପଦାର୍ଥ ବିଜ୍ଞାନ ପରିଭାଷା' ପୁସ୍ତକର ସହ ଲେଖିକା । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ

ଜଡ଼ିତ । ୧୯୯୦ରୁ ୧୯୯୩ ପର୍ଯ୍ୟନ୍ତ ବିଜ୍ଞାନ ପ୍ରଚାର ସମିତିର କୋଷାଧକ୍ଷ ଭାବରେ କାର୍ଯ୍ୟ ସଂପାଦନ । ବିଜ୍ଞାନ ଲେଖିକା ଭାବରେ ନୀଳଶୈଳଦ୍ୱାରା ପୁରସ୍କୃତା ।

**ସ୍ଥାୟୀ ଠିକଣା** – C/O ପ୍ରଫେସର ବିଭୂତିଭୂଷଣ ଦେଓ, ଏ/୧୨୮ ସହିଦ ନଗର, ଭୁବନେଶ୍ୱର - ୭, ଫୋନ୍– ୨୫୧୧୧୬୦

**୩୨. ଡାକ୍ତର ରତ୍ନାକର ଦାସ (୧୯୮୧)**



କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଅବସରପ୍ରାପ୍ତ ଅଧ୍ୟକ୍ଷ ତଥା ଫରେନ୍‌ସିକ୍ ମେଡ଼ିସିନ୍ ଓ ଟକ୍‌ସିକୋଲୋଜି ବିଭାଗର ପୂର୍ବତନ ପ୍ରଫେସର ଏବଂ ବିଭାଗୀୟ ମୁଖ୍ୟ । କଟକ ଜିଲ୍ଲା ନୂଆଗାଁ ଗ୍ରାମରେ ୧୯୪୪ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁଗବେଷକ । ବହୁ ଗବେଷଣାତ୍ମକ ନିବନ୍ଧର ଲେଖକ । କେତେକ ବିଜ୍ଞାନ ଅନୁଷ୍ଠାନର ସଭ୍ୟ ।

**ବର୍ତ୍ତମାନର ଠିକଣା** - ପୁରୀ ।

**୩୩. ଡା. ଶଶିନାରାୟଣ ମହାପାତ୍ର (୧୯୮୨, ୧୯୮୩)**



କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଜୀବରସାୟନ ବିଜ୍ଞାନ ବିଭାଗର ପୂର୍ବତନ ରିସର୍ଚ୍ଚ ଅଫିସର । ଅଧୁନା ଭୁବନେଶ୍ୱରସ୍ଥିତ ଗାନ୍ଧୀ ଡେଣ୍ଟାଲ କଲେଜର ଫାର୍ମାକୋଲୋଜୀ ବିଭାଗର ମୁଖ୍ୟ ପ୍ରଫେସର । ଓଡ଼ିଶା ବିଜ୍ଞାନ ଏକାଡେମୀର ପୂର୍ବତନ ସଂପାଦକ ଓ ବର୍ତ୍ତମାନର ଉପସଭାପତି । କଟକ ଜିଲ୍ଲା ସାଇଲୋ ଝାରପଡ଼ା ଗ୍ରାମରେ ୧୯୪୪ ମସିହାରେ ଜନ୍ମ । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ । ବିଜ୍ଞାନ ଲେଖା ଓ ଗବେଷଣାପାଇଁ ବହୁ ଅନୁଷ୍ଠାନଦ୍ୱାରା ପୁରସ୍କୃତ ।

**ବର୍ତ୍ତମାନର ଠିକଣା** : ଭୁବନେଶ୍ୱର ।

**୩୪. ଡକ୍ଟର ପଞ୍ଚାନନ ପାତ୍ର (୧୯୮୬, ୧୯୮୭)**



ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧ୍ୟାପକ । ୧୯୪୮ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସୁଗବେଷକ ଓ ବକ୍ତା । ବିଭିନ୍ନ ପତ୍ରପତ୍ରିକାରେ ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । କେତେକ ବିଜ୍ଞାନ ଅନୁଷ୍ଠାନର ସଭ୍ୟ । ବିଜ୍ଞାନ ପ୍ରଚାର ସମିତିର ପୂର୍ବତନ କୋଷାଧକ୍ଷ ।

**୩୫. ଡକ୍ଟର ଆଶୁତୋଷ ଦେବତା (୧୯୮୭)**



ଷ୍ଟିୱାର୍ଟ ବିଜ୍ଞାନ କଲେଜର ଅଧ୍ୟକ୍ଷ ଓ କଟକ ଜିଲ୍ଲା ପରିବେଶ ସମିତିର ସଂପାଦକ । କଟକ ଜିଲ୍ଲା ସାଲେପୁର ଠାରେ ୧୯୫୨ ମସିହାରେ ଜନ୍ମ । ଜଣେ ବିଶିଷ୍ଟ ପରିବେଶବିତ୍ ରୂପେ ବେଶ୍ ଜଣାଶୁଣା । ପ୍ରାୟ ୬୦୦ ହେକ୍‌ଟର ଜମିରେ ବୃକ୍ଷରୋପଣରେ ସହାୟତା ପ୍ରଦାନ । ଅଂଶୁପା ହ୍ରଦ ସଂରକ୍ଷଣ ପାଇଁ ବିଶେଷ ଅବଦାନ । ଜଣେ ଜନପ୍ରିୟ ବିଜ୍ଞାନ ଲେଖକ ଓ ପ୍ରଗଳ୍‌ଭ ବକ୍ତା । ବିଭିନ୍ନ ପତ୍ରପତ୍ରିକାରେ ଶତାଧିକ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ ଓ ପ୍ରାୟ ୩୦ ଖଣ୍ଡି ପୁସ୍ତକର ରଚୟିତା । 'ପରିବେଶ ବନ୍ଧୁ' ଓ 'ନନ୍ଦୀଘୋଷ' ପୁରସ୍କାର ପରି ବହୁ ସମ୍ମାନରେ ସମ୍ମାନିତ । ବହୁ ବିଜ୍ଞାନ ସଂସ୍ଥା ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଜଡ଼ିତ । 'ବିଜ୍ଞାନପ୍ରଭା' ପତ୍ରିକାର ସଂପାଦକ ।

**ବର୍ତ୍ତମାନର ଠିକଣା** : 'ଆଶ୍ରୟ,' ନୀଳାଦ୍ରି ବିହାର, ତୁଳସୀପୁର, କଟକ, ୭୫୩୦୦୮, ଫୋନ୍ – ୨୬୦୧୩୪୬

**୩୬. ଡାକ୍ତର ଶୈଳେଶ୍ୱର ନନ୍ଦ (୧୯୮୮-୧୯୯୦)**



ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଜୀବରସାୟନ ବିଜ୍ଞାନ ବିଭାଗର ପୂର୍ବତନ ଅଧ୍ୟାପକ । କଟକ ଠାରେ ୧୯୪୪ ମସିହାରେ ଜନ୍ମ । ବହୁ ପ୍ରବନ୍ଧ, ଗଳ୍ପ, ନାଟକ ଓ ସମାଲୋଚନା ଆଦିର ଲେଖକ । ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ସହିତ ଜଣେ ସଫଳ ନାଟ୍ୟକାର ଓ ଔପନ୍ୟାସିକ । ତାଙ୍କ ସଂପାଦକତ୍ୱ ସମୟରେ ସମିତି ତରଫରୁ ତାଙ୍କଦ୍ୱାରା ଲିଖିତ ଦୁଇଖଣ୍ଡି ବିଜ୍ଞାନଭିତ୍ତିକ ନାଟକ ସଫଳତାର ସହ ମଞ୍ଚସ୍ଥ । ଭଞ୍ଜ ସାହିତ୍ୟର ଜଣେ ଶ୍ରେଷ୍ଠ ପ୍ରବକ୍ତା । ବହୁ ପୁରସ୍କାର ଓ ସମ୍ମାନର ଅଧିକାରୀ ଏବଂ ଅନୁଷ୍ଠାନ ସହିତ ସଂପୃକ୍ତ । ଓଡ଼ିଆ ଚଳଚ୍ଚିତ୍ରର ଜଣେ ସଫଳ ଅଭିନେତା, ପ୍ରଯୋଜକ ଓ ନିର୍ଦ୍ଦେଶକ ।

**ସ୍ଥାୟୀ ଠିକଣା :** ମେରିଆ ବଜାର, କଟକ - ୧ ।

**୩୭. ଡ. ସୁଶୀଲ କୁମାର ମହାପାତ୍ର (୧୯୮୮, ୧୯୮୯)**

ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧାପକ । ଜଣେ ଛାତ୍ରବତ୍ସଳ ଅଧାପକ । କେତେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**୩୮. ଡଃ ଅଭିମନ୍ୟୁ ମିଶ୍ର (୧୯୯୦, ୯୪, ୯୫)**



ପଦାର୍ଥ ବିଜ୍ଞାନ ବିଭାଗର ଜଣେ ଅବସରପ୍ରାପ୍ତ ପ୍ରାଧାପକ । ବଲାଙ୍ଗୀର ଜିଲ୍ଲାର କନ୍ଧପାଲି ଗ୍ରାମରେ ୧୯୪୬ ମସିହାରେ ଜନ୍ମ । ଜଣେ ଉଚ୍ଚକୋଟୀର ବିଜ୍ଞାନ କାର୍ଟୁନିଷ୍ଟ ଭାବରେ ଜଣାଶୁଣା । ବିଭିନ୍ନ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ଓ କାର୍ଟୁନ୍ ପ୍ରକାଶିତ । 'ବିଜ୍ଞାନ ମଧୁପ'ର ପୂର୍ବତନ ସଂପାଦକ । ଶ୍ରେଷ୍ଠ ବିଜ୍ଞାନ ରଚନାପାଇଁ ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମୃତି ପୁରସ୍କାରପ୍ରାପ୍ତ । ପ୍ଲାଜ୍ମା ବିଜ୍ଞାନ ସମିତି ସମେତ ଆହୁରି ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ଅଧୁନା ଏକ ବିଜ୍ଞାନ ପ୍ରକଳ୍ପର ପ୍ରିନ୍‌ସିପାଲ୍ ଇନ୍‌ଭେଷ୍ଟିଗେଟର ଭାବରେ କାର୍ଯ୍ୟରତ ।

**୩୯. ଶ୍ରୀ କଲ୍ୟାଣ ମହାପାତ୍ର (୧୯୯୧-୧୯୯୩)**



ରାଣୀହାଟ ହାଇସ୍କୁଲର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ । ଜଗତ୍‌ସିଂହପୁର ଜିଲ୍ଲାର ନାରଦିଆ ଗାମରେ ୧୯୪୨ ମସିହାରେ ଜନ୍ମ । ଜଣେ କୃତୀ ଶିକ୍ଷକ ଓ ବିଜ୍ଞାନ ଶିକ୍ଷା ପରିଦର୍ଶକ ଭାବରେ ବେଶ୍ ଜଣାଶୁଣା । ବିଭିନ୍ନ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । ଦୁଇ ଖଣ୍ଡି ବିଜ୍ଞାନ ପୁସ୍ତକର ରଚୟିତା । ଭାରତ ଜନ ବିଜ୍ଞାନ ଯାଥା, ଭାରତ ଜ୍ଞାନ-ବିଜ୍ଞାନ ଯାଥା, ଭାରତ ସ୍ୱାସ୍ଥ୍ୟ ବିଜ୍ଞାନ ଯାଥା ସମେତ ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ସ୍କାଉଟ୍ ଓ ଗାଇଡ୍ ଆନ୍ଦୋଳନର ପ୍ରସାରରେ ସକ୍ରିୟ ଅଂଶ ଗ୍ରହଣ । ଚଲାପଥ ଓ ରେଡ଼କ୍ରସ ତରଫରୁ ସମ୍ମାନିତ ।

**ବର୍ତ୍ତମାନର ଠିକଣା :** ରାଣୀହାଟ, ବକ୍ସବଜାର ରୋଡ଼, କଟକ – ୧, ଫୋନ୍ – ୨୬୧୧୦୫୩

**୪୦. ଡାକ୍ତର ଗଙ୍ଗାଧର ସୂତାର (୧୯୯୧-୧୯୯୩)**



କ୍ୟାପିଟାଲ ହସ୍‌ପିଟାଲ, ଭୁବନେଶ୍ୱରର ଅବସରପ୍ରାପ୍ତ ଶିଶୁରୋଗ ବିଶେଷଜ୍ଞ । କେନ୍ଦୁଝର ଜିଲ୍ଲାର କେଶଦୁରାପାଳଠାରେ ୧୯୪୮ ମସିହାରେ ଜନ୍ମ । ବିଭିନ୍ନ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । କେତେକ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ।

**ବର୍ତ୍ତମାନର ଠିକଣା :** କଲ୍ୟାଣୀନଗର, କଟକ – ୧୩, ଫୋନ୍ – ୨୬୨୩୦୯୪, ମୋ- ୯୪୩୭୪୮୮୨୯୬

**୪୧. ଡାଃ ସଚ୍ଚିଦାନନ୍ଦ ଶତପଥୀ (୧୯୯୪, ୧୯୯୫, ୧୯୯୭)**



ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଅଧୀନରେ କଟକ ଜିଲ୍ଲା ସହକାରୀ ମୁଖ୍ୟ ଚିକିତ୍ସାଧିକାରୀ ପଦବୀରେ ଅବସ୍ଥାପିତ । ଜଗତ୍‌ସିଂହପୁର ଜିଲ୍ଲାର ସମଙ୍ଗ ଗ୍ରାମରେ ୧୯୫୦ ମସିହାରେ ଜନ୍ମ । ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ହିସାବରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରାୟ ପାଞ୍ଚ ଶହରୁ ଊର୍ଦ୍ଧ୍ୱ ପ୍ରବନ୍ଧ, ଗଳ୍ପ, କବିତା ଆଦି ପ୍ରକାଶିତ ଏବଂ ୪୦ଖଣ୍ଡି ପୁସ୍ତକର ରଚୟିତା ଓ ୧୫ ଖଣ୍ଡି ପୁସ୍ତକର ସଂପାଦକ । ଜନପ୍ରିୟ ବିଜ୍ଞାନ ରଚନାପାଇଁ ସଂସାର ସ୍ମାରକୀ ପୁରସ୍କାର, ବିଜ୍ଞାନାଲୋକ ଶ୍ରେଷ୍ଠ ଲେଖକ ପୁରସ୍କାର, ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର, ବିଭାବନା ପୁରସ୍କାର, ଅକ୍ଷୟ ତୃତୀୟା ସମ୍ମାନ, ସହକାର ସମ୍ମାନ, ସୁପ୍ରତିଭା ସମ୍ମାନ ପରି ବହୁ ପୁରସ୍କାର ଓ ସମ୍ମାନରେ ସମ୍ମାନିତ । ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ । 'ମରୁଜ୍ୟୋତି'ର ପୂର୍ବତନ ସଂପାଦକ ଓ ବିଜ୍ଞାନାଲୋକ, ପରିବେଶ ତରଙ୍ଗ, ବିଜ୍ଞାନ ଦିଗନ୍ତ ପ୍ରଭୃତି ବିଜ୍ଞାନ ପତ୍ରିକାର ସଂପାଦନା ମଣ୍ଡଳୀର ସଭ୍ୟ । ତାଙ୍କ ସମ୍ପାଦକତ୍ୱ ସମୟରେ ତାଙ୍କରି ସଂପାଦନାରେ ବିଜ୍ଞାନ ପ୍ରଚାର ସମିତି ତରଫରୁ ସର୍ବପ୍ରଥମ ଥର ପାଇଁ 'ଓଡ଼ିଶାର ବିଜ୍ଞାନ ଲେଖକ' ପୁସ୍ତକ ପ୍ରକାଶିତ ।

**ବର୍ତ୍ତମାନର ଠିକଣା :** 'ନିମନ୍ତ୍ରଣ', ପ୍ଲଟ୍ ନଂ-୮୯, ଶକ୍ତିନଗର, ଲିଙ୍କରୋଡ଼, କଟକ - ୧୨, ମୋ - ୯୪୩୭୦୦୧୬୭୩

## ୪୨. ପ୍ରଫେସର ଡା. ସୁଦର୍ଶନ ପଟ୍ଟନାୟକ (୧୯୯୬)



ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ନିଶ୍ଚେତନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ ପ୍ରଫେସର । ବାଲେଶ୍ୱର ଜିଲ୍ଲାର ବରି ନୟାଡା ଗ୍ରାମରେ ୧୯୪୦ ମସିହାରେ ଜନ୍ମ । ବହୁ ବିଜ୍ଞାନ ପ୍ରବନ୍ଧ ଓ ବିଜ୍ଞାନ ପୁସ୍ତକର ରଚୟିତା । ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ବିଜ୍ଞାନାଲୋକ ଶ୍ରେଷ୍ଠ ଲେଖକ ପୁରସ୍କାର ସମେତ ଆହୁରି କେତେକ ପୁରସ୍କାରରେ ସମ୍ମାନିତ ।

**ବର୍ତ୍ତମାନର ଠିକଣା :** ପ୍ଲଟ୍ ନଂ. ୧୫୭୧, ମହାନଦୀବିହାର, କଟକ - ୪

## ୪୩. ଡଃ ପ୍ରମୋଦ କୁମାର ମହାପାତ୍ର (୧୯୯୬, ୧୯୯୭)



ଓଡ଼ିଶାର ବହୁ ପ୍ରସାରିତ ଦୈନିକ ସମ୍ବାଦପତ୍ର 'ସମାଜ'ର ବରିଷ୍ଠ ସହ ସଂପାଦକ । କେନ୍ଦ୍ରାପଡ଼ା ଜିଲ୍ଲାର ଓଳିହା ଗ୍ରାମରେ ୧୯୫୬ ମସିହାରେ ଜନ୍ମ । ଜଣେ ଜନପ୍ରିୟ ବିଜ୍ଞାନ ଲେଖକ ହିସାବରେ ବିଭିନ୍ନ ପତ୍ର-ପତ୍ରିକାରେ ଅଗଣିତ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ ଓ ପ୍ରାୟ ୫୦ଖଣ୍ଡି ପୁସ୍ତକର ରଚୟିତା । ପଠାଣି ସାମନ୍ତ ପୁରସ୍କାର, ଡଃ ରାଧାନାଥ ରଥ ପୁରସ୍କାର, କଣ୍ଟେଇ ପୁରସ୍କାର, ବିଜ୍ଞାନାଲୋକ ଶ୍ରେଷ୍ଠ ଲେଖକ ପୁରସ୍କାର, ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ସମେତ ଆହୁରି ବହୁ ପୁରସ୍କାର ଓ ସମ୍ମାନରେ ସମ୍ମାନିତ । ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ । 'ବିଜ୍ଞାନ ପ୍ରଭା'ର ସଂପାଦକ । ଜଣେ ଦକ୍ଷ ସଂଗଠକ ଓ ପ୍ରଗଲ୍‌ଭ ବକ୍ତା ଭାବରେ ସୁପରିଚିତ । ତାଙ୍କର ପ୍ରଚଣ୍ଡ ଉଦ୍ୟମ ଓ ପରିଚାଳନାରେ ବିଜ୍ଞାନ ପ୍ରଚାର ସମିତି ତରଫରୁ 'ଓଡ଼ିଶାର ବିଜ୍ଞାନ ଲେଖକ' ପୁସ୍ତକ ପ୍ରକାଶିତ ।

**ବର୍ତ୍ତମାନର ଠିକଣା** – ସାମ୍ବାଦିକ କଲୋନୀ, ମଧୁସୂଦନ ନଗର, କଟକ - ୮, ଫୋନ୍ – ୨୬୦୨୬୭୮, ମୋ- ୯୮୬୧୨୪୯୨୦୨ ।

## ୪୪. ଡ. ଗୌରାଙ୍ଗ ଚନ୍ଦ୍ର ମହାନ୍ତି (୧୯୯୮, ୯୯, ୨୦୦୦)



ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ପ୍ରାଧ୍ୟାପକ । କଟକ ଜିଲ୍ଲା ଗୋଡ଼ିବନ୍ଧ ଗ୍ରାମରେ ୧୯୫୫ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଓ ଉତ୍ତମ ଗବେଷକ । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଆକାଶବାଣୀର ବିଜ୍ଞାନ କାର୍ଯ୍ୟକ୍ରମରେ ନିୟମିତ ଅଂଶ ଗ୍ରହଣ । ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ । ତାଙ୍କ ସଂଯୋଜନାରେ ରେଭେନ୍ସା କଲେଜ ଠାରେ ଏକ ଚାରିଦିନିଆ ବିଜ୍ଞାନ ଲେଖକ କର୍ମଶାଳା ସଫଳଭାବେ ପରିଚାଳିତ ।

## ୪୫. ଶ୍ରୀ ନିରଞ୍ଜନ ପାତ୍ର (୧୯୯୮, ୧୯୯୯)



କଟକ ଦେଉଳସାହିଁ ରଘୁନାଥ ଜୀଉ ବିଦ୍ୟାପୀଠର ଅନ୍ୟତମ ବିଜ୍ଞାନ ଶିକ୍ଷକ । କଟକ ଜିଲ୍ଲାର ରଘୁନାଥପୁର (ମହୁରା) ଗ୍ରାମରେ ୧୯୬୪ ମସିହାରେ ଜନ୍ମ । ବିଭିନ୍ନ ପତ୍ର-ପତ୍ରିକାରେ କେତେକ ବିଜ୍ଞାନ ପ୍ରବନ୍ଧ ପ୍ରକାଶିତ । ବିଜ୍ଞାନଭିତ୍ତିକ କବିତା ଲେଖିବାରେ ଧୁରନ୍ଧର । ବହୁ ବିଜ୍ଞାନ ଅନୁଷ୍ଠାନର ସଭ୍ୟ । ଆକାଶବାଣୀର ବିଦ୍ୟାଳୟ କାର୍ଯ୍ୟକ୍ରମରେ ନିୟମିତ ଅଂଶ ଗ୍ରହଣ । ତାଙ୍କ ସମ୍ପାଦକତ୍ୱ ସମୟରେ କଟକ ରେଭେନ୍ସା କଲେଜଠାରେ ଏକ ଚାରିଦିନିଆ ବିଜ୍ଞାନ ଲେଖକ କର୍ମଶାଳା ସଫଳଭାବେ ପରିଚାଳିତ ।

**ବର୍ତ୍ତମାନର ଠିକଣା :** ରଘୁନାଥପୁର (ମହୁରା), ପୋ.ଅ. ପରମହଂସ, ଭାୟା – ବିରିବାଟି, ଜି. କଟକ, ମୋ - ୯୪୩୭୧୦୮୦୨୨ ।

**୪୬. ଡାକ୍ତର କିଶୋର ଚନ୍ଦ୍ର ମହାନ୍ତି (୨୦୦୦-୦୧)**



ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର ବିଜ୍ଞାନ ବିଶାରଦ ରୂପେ ଅବସ୍ଥାପିତ । ଏହା ବ୍ୟତୀତ ନୂତନ ଜୀବବିଜ୍ଞାନ (ISCA) ର ବିଭାଗୀୟ ସଦସ୍ୟ, ପିଲାଙ୍କ ବିଜ୍ଞାନ କଂଗ୍ରେସର ଶୈକ୍ଷିକ ସଂଯୋଜକ, ପୂର୍ବ କ୍ଷେତ୍ରର (ଆସାମ, ବଙ୍ଗ, ଓଡ଼ିଶା ଓ ଆଣ୍ଡାମାନ) ବିଜ୍ଞାନ ପ୍ରମୁଖ ଏବଂ ବିଜ୍ଞାନ ଭାରତୀର ସଂପାଦକ ଭାବରେ କାର୍ଯ୍ୟରତ । ୧୯୫୫ ମସିହାରେ ଜନ୍ମ । ବହୁ ବିଜ୍ଞାନ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଏବଂ ୧୦ଟିରୁ ଅଧିକ ପୁସ୍ତକର ରଚୟିତା । ବିଜ୍ଞାନ ଲେଖାପାଇଁ ବହୁ ଅନୁଷ୍ଠାନଦ୍ୱାରା ପୁରସ୍କୃତ ।

**ବର୍ତ୍ତମାନର ଠିକଣା :** ସାମନ୍ତସାହି, କଟକ, ଫୋନ୍ - ୨୪୧୯୬୪୭, ମୋବାଇଲ - ୯୩୩୭୨୬୮୫୧୭.

**୪୭. ପ୍ର. ଡଃ. ବୈଷ୍ଣବ ଚରଣ ସିଂହ (୨୦୦୧-୦୩)**



କଟକ ରେଭେନ୍ସା ବିଶ୍ୱ ବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର ଓ ବିଭାଗୀୟ ମୁଖ୍ୟ । କେନ୍ଦ୍ରାପଡ଼ା ଜିଲ୍ଲାର କଟରାମଲଠାରେ ୧୯୪୭ ମସିହାରେ ଜନ୍ମ । ୧୯୭୭ ମସିହାରେ ଉତ୍କଳ ବିଶ୍ୱ ବିଦ୍ୟାଳୟରୁ ଓ ୧୯୮୦ ମସିହାରେ କାନାଡ଼ାର ବ୍ରିଟିଶ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପ୍ରାପ୍ତ । ପଲିମର ବିଜ୍ଞାନର ଜଣେ ଗବେଷକ । ବହୁ ବିଜ୍ଞାନ ପ୍ରବନ୍ଧ ଓ ପୁସ୍ତକର ରଚୟିତା । ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଜାତୀୟ ଓ ଆନ୍ତର୍ଜାତୀୟ ପତ୍ରିକାରେ ପ୍ରକାଶିତ ।

**ବର୍ତ୍ତମାନର ଠିକଣା :** ରାଜେନ୍ଦ୍ର ନଗର, କଟକ, ମୋବାଇଲ - ୯୯୩୭୧୯୬୭୫୩ ।

**୪୮. ଡଃ ଶିଶିରକାନ୍ତ ବେହେରା (୨୦୦୨, ୦୩, ୦୪)**

ଓଡ଼ିଶା ଜଳସଂପଦ ବିଭାଗର ଜଣେ ପଦସ୍ଥ ଇଞ୍ଜିନିୟର । କେନ୍ଦ୍ରାପଡ଼ା ଜିଲ୍ଲାର ମହାକାଳପଡ଼ାଠାରେ ୧୯୫୫ ମସିହାରେ ଜନ୍ମ । ଆଇ.ଆଇ.ଟି. ଖଡ଼ଗପୁରରୁ ୧୯୯୪ ମସିହାରେ ପିଏଚ୍.ଡି. ପ୍ରାପ୍ତ । ବହୁ ଗବେଷଣାତ୍ମକ ନିବନ୍ଧ ବିଭିନ୍ନ ଜାତୀୟ ଓ ଅନ୍ତର୍ଜାତୀୟ ପତ୍ରିକାରେ ପ୍ରକାଶିତ । ବହୁ ସମିତି ତଥା ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ । ଭୂତଳ ଜଳ ସମ୍ବନ୍ଧୀୟ ଅନେକ ପ୍ରବନ୍ଧ ଓ ପୁସ୍ତକର ରଚୟିତା ।



**ବର୍ତ୍ତମାନର ଠିକଣା :** ଭୁବନେଶ୍ୱର ।

**୪୯. ଡକ୍ଟର ବିଜୟ କୁମାର ମିଶ୍ର (୨୦୦୪-୦୫)**



ରେଭେନ୍ସା ବିଶ୍ୱବିଦ୍ୟାଳୟର ପ୍ରୟୋଗାତ୍ମକ ଭୂଗୋଳ ବିଭାଗର ମୁଖ୍ୟ ଅଧ୍ୟାପକ ଏବଂ ସ୍କୁଲ୍ ଅଫ୍ ରିଜିଓନାଲ୍ ଷ୍ଟଡିଜ୍ ଓ ଆର୍ଥ ସାଇନ୍ସର ଡିନ୍ ଭାବେ କାର୍ଯ୍ୟରତ । ନୟାଗଡ଼ ଜିଲ୍ଲାର ସାରଙ୍ଗଧରପୁରଠାରେ ୧୯୫୨ ମସିହାରେ ଜନ୍ମ । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ଜଡ଼ିତ । ପ୍ରାକୃତିକ ବିପର୍ଯ୍ୟୟ ବିଷୟରେ ୧୦ଟିରୁ ଊର୍ଦ୍ଧ୍ୱ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

**ବର୍ତ୍ତମାନର ଠିକଣା :** କଟକ, ମୋ. - ୯୩୩୭୨୭୧୦୧୧

**୫୦. ଡକ୍ଟର ସୁବାସିନୀ ଲେଙ୍କା (୨୦୦୫-୦୬)**



ରେଭେନ୍ସା ମହାବିଦ୍ୟାଳୟ ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରାଧାପିକା । ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବାସୁଦେବପୁର ଥାନା ଅନ୍ତର୍ଗତ ଉରୁଣିଆ ଗ୍ରାମରେ ୧୯୪୫ ମସିହାରେ ଜନ୍ମ । ଜଣେ ଛାତ୍ରବତ୍ସଳ ଅଧାପିକା ଓ ଉଚ୍ଚକୋଟୀର ଗବେଷିକା । ଦେଶ ବିଦେଶ ପତ୍ରିକାରେ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶପାଇଁ ଓଡ଼ିଶା ବିଜ୍ଞାନ ଏକାଡେମୀଦ୍ୱାରା 'ସାମନ୍ତ ଚନ୍ଦ୍ରଶେଖର' ସମ୍ମାନରେ ସମ୍ମାନିତା । ପଲିମର ବିଜ୍ଞାନ ଓ ଖାଦ୍ୟ ଅପମିଶ୍ରଣ ନିବାରଣ ପୁସ୍ତକମାନଙ୍କର ରଚୟିତା । ଅନେକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ବୈଜ୍ଞାନିକମାନଙ୍କ ଜୀବନୀ ବିଭିନ୍ନ ପତ୍ରପତ୍ରିକା ଓ ପୁସ୍ତକରେ ପ୍ରକାଶିତ । ଦେଶବିଦେଶରେ ବିଭିନ୍ନ ସଂସ୍ଥାନରେ ବକ୍ତୃତା ପ୍ରଦାନ ଓ ପ୍ରବନ୍ଧ ପାଠ । ଆନ୍ତର୍ଜାତିକ ରୋଟାରି ସେବା ସଂସ୍ଥାରେ

କାର୍ଯ୍ୟରତ ଓ ପୁରସ୍କୃତ । ଅନେକ ବିଜ୍ଞାନ ସଂସ୍ଥାର ସଭ୍ୟା । ସୁଗବେଷିକା ଓ ସୁଲେଖିକା ହିସାବରେ ବହୁ ସଂସ୍ଥାଦ୍ୱାରା ସମ୍ମାନିତା ।

**ବର୍ତ୍ତମାନର ଠିକଣା :** ସ୍ୱାତୀ ଭବନ, ଷ୍ଟେସନ ବଜାର, କଲେଜଛକ, କଟକ - ୭୫୩ ୦୦୩, ଫୋନ୍ - ୨୬୪୭୫୨୩, ମୋ-୯୮୬୧୪୨୨୨୨୨

**୫୧. ଚୌଧୁରୀ ଶରତ ଚନ୍ଦ୍ର ଦାସ (୨୦୦୬)**

କଟକ ସେକେଣ୍ଡାରୀ ବୋର୍ଡ ହାଇସ୍କୁଲର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ । ଜଣେ ଛାତ୍ରବତ୍ସଳ ବିଜ୍ଞାନ ଶିକ୍ଷକ ଓ ସଂଗଠକ ଭାବରେ ବେଶ ପରିଚିତ । କଟକ ଜିଲ୍ଲା ନିଶ୍ଚିନ୍ତକୋଇଲିର ଇଟାମୁଣ୍ଡିଠାରେ ୧୯୪୩ ମସିହାରେ ଜନ୍ମ ଓ ୨୦୦୩ ମସିହାରେ ଅବସର ଗ୍ରହଣ । ଜଣେ ଦକ୍ଷ ଶିକ୍ଷକ ହିସାବରେ ରାଜ୍ୟସ୍ତରୀୟ ଓ କେନ୍ଦ୍ରସ୍ତରୀୟ ପୁରସ୍କାରପ୍ରାପ୍ତ । ବହୁ ସଭାସମିତି, ସେମିନାର ଓ ପ୍ରକଳ୍ପରେ ସଫଳତାର ସହ ଯୋଗଦାନ । କେତେକ ବିଜ୍ଞାନ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ବିଜ୍ଞାନ ପ୍ରଚାର ସମିତିର ବହୁ ଗଠନମୂଳକ କାର୍ଯ୍ୟ ସହିତ ସଂପୃକ୍ତ ।



**ବର୍ତ୍ତମାନର ଠିକଣା :** ରାଜା ବଗିଚା, କଟକ

**୫୨. ଇଂ.ଧୀରେନ୍ଦ୍ର କୁମାର ବିଶ୍ୱାଳ (୨୦୦୭-୦୯)**

ଓଡ଼ିଶା ସରକାରଙ୍କ ଜନସ୍ୱାସ୍ଥ୍ୟ ଇଞ୍ଜିନିୟରିଂ ବିଭାଗର ଅବସରପ୍ରାପ୍ତ କାର୍ଯ୍ୟନିର୍ବାହୀ ଯନ୍ତ୍ରୀ । କଟକ ଜିଲ୍ଲା ସାଲେପୁର ବ୍ଲକ୍ ଅନ୍ତର୍ଗତ ତ୍ରିଲୋଚନପୁର ଗ୍ରାମରେ ୧୯୪୧ ମସିହାରେ ଜନ୍ମ । ସିଭିଲ୍ ଇଞ୍ଜିନିୟରିଂରେ ସର୍ବୋଚ୍ଚ ନମ୍ବର ରଖିଥିବାରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ । ଜଣେ ଦକ୍ଷ ଇଞ୍ଜିନିୟର ଓ ସୁସଂଗଠକ ଭାବେ ସୁପରିଚିତ । ତାଙ୍କ ପ୍ରେରଣାରେ ଓଡ଼ିଶାରେ ପ୍ରଥମେ ପିଭିସି ପାଇପ୍ ଉତ୍ପାଦନ ଆରମ୍ଭ ହୋଇଥିଲା ।



ରୋଟାରୀ କ୍ଲବ ମାଧ୍ୟମରେ ଗ୍ରାମାଞ୍ଚଳରେ ବହୁ ଜନହିତକର କାର୍ଯ୍ୟ ସଂପାଦନ କରିଅଛନ୍ତି । ତାଙ୍କ ସଂପାଦକତ୍ୱରେ ବହୁ ବିଦ୍ୟାଳୟ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଛି ।

**ବର୍ତ୍ତମାନର ଠିକଣା** – 'ସ୍ୱାତୀ ଭବନ', ଷ୍ଟେସନ୍ ବଜାର, ପୋ. କଲେଜ ସ୍କୋୟାର, କଟକ - ୭୫୩ ୦୦୩ ଫୋନ୍/ ମୋ. - ୦୬୭୧-୨୬୪୭୫୨୩/ ୯୮୬୧୦୨୬୧୦୨

**୫୩. ଡ. ନାରାୟଣ ଚନ୍ଦ୍ର ପାଳ (୨୦୦୭-୦୯)**

ରେଭେନ୍ସା ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗର ପ୍ରାଧ୍ୟାପକ । ଜଗତ୍‌ସିଂହପୁର ଜିଲ୍ଲାର ଗୋବିନ୍ଦାପୋଖରୀ ଗ୍ରାମରେ ୧୯୫୭ ମସିହାରେ ଜନ୍ମ । ଛାତ୍ର ଜୀବନରେ ଜଣେ ମେଧାବୀ ଛାତ୍ର । ୧୯୭୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ପରିଚାଳିତ ସ୍ନାତକ ପରୀକ୍ଷାରେ ରସାୟନ ବିଜ୍ଞାନ ବିଭାଗ ସମ୍ମାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସୁଗବେଷକ ଓ ସୁସଂଗଠକ । ବହୁ ବିଜ୍ଞାନ ଅନୁଷ୍ଠାନ ସହିତ ସଂପୃକ୍ତ ।



**ବର୍ତ୍ତମାନର ଠିକଣା** – ରେଭେନ୍ସା କଲେଜ ପରିସର, କଲେଜଛକ, କଟକ - ୭୫୩ ୦୦୩, ଫୋନ୍ -୯୪୩-୭୩୧୧୨୧୬



# ବିଜ୍ଞାନପ୍ରଚାର ସମିତିର ସଂଶୋଧିତ ନିୟମାବଳୀ - ୨୦୦୭

**ପ୍ରତିଷ୍ଠା - ଅଗଷ୍ଟ ୭, ୧୯୪୯, ରେଜିଷ୍ଟ୍ରେସନ୍ ନଂ. - ୧୧୨୬/୧୩୩-୧୯୬୪**

**ବିଜ୍ଞାନ ପ୍ରଚାର ସମିତିର ଆରମ୍ଭ**

ବିଜ୍ଞାନ ପ୍ରଚାର ସମିତି ୧୯୪୯ ମସିହା ଅଗଷ୍ଟ ମାସ ତା୭ରିଖ ଦିନ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ଓ ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ମିଳିତ ଆହ୍ୱାନକ୍ରମେ କଟକର ବଡ଼ଡାକ୍ତରଖାନା ଅନ୍ତର୍ଗତ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ସରକାରୀ ବାସଭବନରେ ଆରମ୍ଭ ହୋଇଥିଲା । ବିଜ୍ଞାନକୁ କିପରି ଭାବରେ ଜନସାଧାରଣରେ ଲୋକପ୍ରିୟ କରାଯାଇପାରିବ, ସେ ବିଷୟରେ ଆଲୋଚନା କରିବାପାଇଁ କେତେଜଣ ବିଜ୍ଞାନପ୍ରେମୀ ଉତ୍ସାହୀ ବ୍ୟକ୍ତିଙ୍କୁ ନେଇ ଗୋଟିଏ ଆଲୋଚନା ସଭା ବସିଥିଲା । ସେହି ସଭାରେ **ବିଜ୍ଞାନ ପ୍ରଚାର ସମିତି** ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କରାଗଲା । ଜନସାଧାରଣଙ୍କପାଇଁ ବିଜ୍ଞାନକୁ ଲୋକପ୍ରିୟ କରିବା ଛଡ଼ା ବିଜ୍ଞାନରେ ଆଗ୍ରହୀ ଥିବା ବୈଜ୍ଞାନିକମାନଙ୍କ ଭିତରେ ଭାବର ଆଦାନପ୍ରଦାନ, ସୌହାର୍ଦ୍ଦ୍ୟ ଓ ସାମାଜିକ ସମ୍ପର୍କ ସ୍ଥାପନ କରିବା ମଧ୍ୟ ଏହାର ଅନ୍ୟତମ ଉଦ୍ଦେଶ୍ୟ ଥିଲା ।

ସମିତିର ଏହି ସର୍ବପ୍ରଥମ ପ୍ରତିଷ୍ଠା ଅଧିବେଶନରେ ନିମ୍ନୋକ୍ତ ବ୍ୟକ୍ତିମାନେ ଯୋଗଦେଇଥିଲେ । ଏହି ଅଧିବେଶନରେ ଡକ୍ଟର ସଦାଶିବ ମିଶ୍ର ସଭାପତିତ୍ୱ କରିଥିଲେ । ନିମ୍ନୋକ୍ତ ବ୍ୟକ୍ତିମାନେ ପ୍ରତିଷ୍ଠାତା ସଭ୍ୟ ଭାବରେ ପରିଗଣିତ ହେଲେ ।

୧. ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ୨. ଡକ୍ଟର ରାଧାନାଥ ରଥ ୩. ଡକ୍ଟର ସୁକୁମାର ଆଦିତ୍ୟ ୪. ଅଧ୍ୟାପକ କୃଷ୍ଣଚରଣ ଦାସ ୫. ଡକ୍ଟର ଶ୍ୟାମାନନ୍ଦ ପଟ୍ଟନାୟକ ୬. ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର ୭. ଡାକ୍ତର ରାଇକୃଷ୍ଣ ମହାନ୍ତି ୮. ଡକ୍ଟର ସଦାଶିବ ମିଶ୍ର ଓ ୯. ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ଏହି ସମିତି ଗଠନ ପରେ ସମିତିରେ କୌଣସି ସ୍ଥାୟୀ ନିର୍ବାଚିତ ସଭାପତି ନ ରହିବାପାଇଁ ସ୍ଥିର କରାଯାଇଥିଲା । ନିର୍ବାଚିତ ଦୁଇ ଜଣ ସମ୍ପାଦକଙ୍କ ହସ୍ତରେ ସମିତିର କାର୍ଯ୍ୟଭାର ଅର୍ପଣ କରାଯିବାପାଇଁ ଠିକ୍ ହୋଇଥିଲା । ଡକ୍ଟର ରାଧାନାଥ ରଥ ଓ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଏହି ଅନୁଷ୍ଠାନର ସର୍ବପ୍ରଥମ ସମ୍ପାଦକ ଭାବରେ ସେହି ସଭାରେ ନିର୍ବାଚିତ ହୋଇ ଦାୟିତ୍ୱ ଗ୍ରହଣ କରିଥିଲେ ।

ପରିବର୍ତ୍ତିତ ପରିସ୍ଥିତିରେ ପୂର୍ବ ନିୟମାବଳୀର କେତେକ ସଂଶୋଧନ ଆବଶ୍ୟକ ହେବାରୁ ସମିତିଦ୍ୱାରା ଏହି ସଂଶୋଧିତ ନିୟମାବଳୀ, ୨୦୦୭ ପ୍ରସ୍ତୁତ ହୋଇଅଛି ।

## ସମିତିର ନିୟମାବଳୀ

**ନିୟମ ୧**

ସମିତିର ନାମ 'ବିଜ୍ଞାନ ପ୍ରଚାର ସମିତି', ମୁଖ୍ୟ କାର୍ଯ୍ୟାଳୟ : 'ଆମ୍ରପଲ୍ଲୀ', ଦୋଳମୁଣ୍ଡେଇ, କଟକ - ୭୫୩୦୦୯

**ନିୟମ ୨ - ଉଦ୍ଦେଶ୍ୟ**

ଓଡ଼ିଆ ଭାଷା ମାଧ୍ୟମରେ ବୈଜ୍ଞାନିକ ତଥ୍ୟ ଓ ଯୁକ୍ତି ଉପରେ ପ୍ରତିଷ୍ଠିତ ଆଲୋଚନା, ବକ୍ତୃତା, ପ୍ରବନ୍ଧ ଓ ପୁସ୍ତକ ରଚନା, ପତ୍ରିକା ପ୍ରକାଶନ ଏବଂ ଅନ୍ୟାନ୍ୟ ଉପାୟରେ ଜନସାଧାରଣଙ୍କ ମଧ୍ୟରେ ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ବିଷୟର ପ୍ରଚାର । ପ୍ରଚାର ମାଧ୍ୟମ ଏପରି ସରଳ ଓ ସହଜ ହେବା ଦରକାର ଯେମିତି କି ଛାତ୍ରଛାତ୍ରୀ ଓ ଜନସାଧାରଣ ଏଥିରୁ କିଛି ଶିକ୍ଷା ପାଇପାରିବେ । ଏହାଛଡ଼ା ସଭ୍ୟମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସାମାଜିକ ସମ୍ପର୍କ ଓ ସୌହାର୍ଦ୍ଦ୍ୟ ସ୍ଥାପନ ଏହାର ଅନ୍ୟତମ ଲକ୍ଷ୍ୟ ।

**ନିୟମ ୩ - ସମିତି**

ସମିତି କହିଲେ ବିଜ୍ଞାନ ପ୍ରଚାର ସମିତିକୁ ବୁଝାଇବ ।

ସଭ୍ୟ ଓ ପୃଷ୍ଠପୋଷକମାନଙ୍କୁ ନେଇ ସମିତି ଗଠିତ ହେବ ।

## ଧାରା (କ)

**ଉପଧାରା-୧ ସଭ୍ୟ ହେବାର ନିୟମ** - ସଭ୍ୟ ହେବାପାଇଁ ଅନ୍ତତଃ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର କୌଣସି ଗୋଟିଏ ବିଷୟବସ୍ତୁରେ ଉପଯୁକ୍ତ ଜ୍ଞାନ * ଥିବା ଦରକାର ।

**ଉପଧାରା ୨** - ସମିତିର ସଭ୍ୟ ହେବା ଲାଗି ପ୍ରତ୍ୟେକ ଦରଖାସ୍ତ ସମିତିର ଅନ୍ତତଃ ଯେକୌଣସି ଜଣେ ସକ୍ରିୟ ସଭ୍ୟ **ଙ୍କର ଅନୁମୋଦନ ସହ ସମିତିର ସମ୍ପାଦକଙ୍କ ପାଖରେ ପହଞ୍ଚିବା ଦରକାର ।

**ଉପଧାରା ୩** - ଯେକୌଣସି ସାଧାରଣ ଅଧିବେଶନରେ ଉପସ୍ଥିତ ଥିବା ସଭ୍ୟମାନଙ୍କ ଭିତରୁ ଦୁଇତୃତୀୟାଂଶ ସଭ୍ୟଙ୍କଦ୍ୱାରା ଦରଖାସ୍ତକାରୀଙ୍କର ସଭ୍ୟ ହେବାଲାଗି ଲିଖିତ ଆବେଦନ ଅନୁମୋଦିତ ହେବା ଦରକାର ।

**ଉପଧାରା ୪** - ସମିତିରେ ଆଲୋଚନା ଲାଗି ବର୍ଷକୁ ଅନ୍ତତଃ ବିଜ୍ଞାନ ସମ୍ବନ୍ଧୀୟ ଗୋଟିଏ ପ୍ରବନ୍ଧ ପ୍ରତ୍ୟେକ ସଭ୍ୟଙ୍କୁ ଲେଖିବାକୁ ପଡ଼ିବ । ସେହି ପ୍ରବନ୍ଧକୁ ସେ ନିଜେ ପଢ଼ି ବା ଅନ୍ୟ ସଭ୍ୟଙ୍କଦ୍ୱାରା ସମିତିରେ ପଢ଼ାଇ ସମିତିଦ୍ୱାରା ଗୃହୀତ କରାଇବେ ।

**ଉପଧାରା ୫** - କୌଣସି ସଭ୍ୟ ନିୟମ ୨ରେ ନିର୍ଦ୍ଧାରିତ ଉଦ୍ଦେଶ୍ୟ ବିରୋଧରେ କାର୍ଯ୍ୟକଲେ କିମ୍ବା କୌଣସି ଧର୍ତ୍ତବ୍ୟ ଅପରାଧରେ ଦଣ୍ଡିତ ହେଲେ ତାଙ୍କର ସ୍ଥାୟୀ ବା ଅସ୍ଥାୟୀ ଭାବରେ ବହିଷ୍କାରକୁ ସ୍ୱତନ୍ତ୍ର ଅଧିବେଶନରେ ଉପସ୍ଥିତ ସଭ୍ୟମାନଙ୍କ ଭିତରୁ ତିନିଚତୁର୍ଥାଂଶ ସଭ୍ୟ ସମର୍ଥନ କରିବା ଆବଶ୍ୟକ । ଅସ୍ଥାୟୀ ଭାବରେ ବହିଷ୍କୃତ ସଭ୍ୟ ପୁନର୍ବାର ଦରଖାସ୍ତ କଲେ ସମିତିର ଅନୁମୋଦନକ୍ରମେ ପୁଣି ସଭ୍ୟ ହୋଇପାରିବେ ।

## ଧାରା (ଖ ) ସଭ୍ୟ

ଯେଉଁମାନେ ଏକକାଳୀନ ତିନିଶତ ଟଙ୍କା ଦେଇ ଦରଖାସ୍ତ କରିବେ ଏବଂ ଧାରା (କ)ର ଉପଧାରା ୧. ର ସମସ୍ତ ସର୍ତ୍ତ ପୂରଣ କରୁଥିବେ, ସେହିମାନଙ୍କୁ ଉପଧାରା ୨. ଅନୁସାରେ ସଭ୍ୟ ଭାବରେ ଗ୍ରହଣ କରାଯିବ । ଏହି ସଭ୍ୟମାନଙ୍କପାଇଁ ନିୟମାବଳୀ ୩ - ଧାରା 'କ' ପ୍ରଯୁଜ୍ୟ ହେବ ।

## ଧାରା (ଗ) ପୃଷ୍ଠପୋଷକ

**ଉପଧାରା (୧)** - ବିଜ୍ଞାନରେ ଆଗ୍ରହୀ ଯେକୌଣସି ବ୍ୟକ୍ତି ଏକକାଳୀନ ଅନ୍ୟୂନ ଏକହଜାର ଟଙ୍କା ଦାନ କଲେ 'ପୃଷ୍ଠପୋଷକ' ଭାବେ ଗୃହୀତ ହୋଇପାରିବେ ।

**ଉପଧାରା (୨)** - କୌଣସି ବ୍ୟକ୍ତିଙ୍କୁ ସମିତିର ପୃଷ୍ଠପୋଷକ ରୂପେ ଗ୍ରହଣ କରିବାକୁ ହେଲେ ସମିତିର ସାଧାରଣ ଅଧିବେଶନରେ ଆଲୋଚିତ ହୋଇ ଉପସ୍ଥିତ ଥିବା ଦ୍ୱି-ତୃତୀୟାଂଶ ସଭ୍ୟଙ୍କଦ୍ୱାରା ତାହା ଗୃହୀତ ହେବା ଦରକାର ।

**ଉପଧାରା (୩)** - ପୃଷ୍ଠପୋଷକମାନେ ସମିତିର ଯେକୌଣସି ଅଧିବେଶନରେ ଯୋଗ ଦେଇପାରିବେ ଏବଂ ସମିତିର ଅନ୍ୟ ସଭ୍ୟମାନଙ୍କ ପରି ବିଜ୍ଞାନ ସମ୍ବନ୍ଧୀୟ ପ୍ରବନ୍ଧ ପାଠ କରିପାରିବେ, କିନ୍ତୁ ସେମାନଙ୍କର କୌଣସି ଭୋଟ ଅଧିକାର ରହିବ ନାହିଁ ।

**ନିୟମ ୪ - ସମିତିର ବର୍ଷ ଆରମ୍ଭ ଓ କର୍ମକର୍ତ୍ତା ନିର୍ବାଚନ :**

**ଧାରା - (କ)** ସମିତିର କାର୍ଯ୍ୟକାରୀ ବର୍ଷ ଇଂରାଜୀ କ୍ୟାଲେଣ୍ଡର ଅନୁସାରେ ଜାନୁୟାରୀ ପହିଲା ଦିନଠାରୁ ଆରମ୍ଭ ହେବ ଓ ସେହି ବର୍ଷ ଡିସେମ୍ବର ତା୩୧ ରିଖରେ ଶେଷ ହେବ ।

**ଧାରା - (ଖ)** ପ୍ରତିବର୍ଷର ନଭେମ୍ବର ମାସ ଚତୁର୍ଥ ରବିବାର ଅପରାହ୍ଣ ୪ ଘଟିକା ସମୟରେ ସମିତିର କାର୍ଯ୍ୟାଳୟରେ ସମିତିର ପରପୃଷ୍ଠାସ୍ଥ କର୍ମକର୍ତ୍ତାମାନେ ନିର୍ବାଚିତ ହେବେ । କୌଣସି ଅନିବାର୍ଯ୍ୟ କାରଣରୁ କାର୍ଯ୍ୟନିର୍ବାହୀ ସମିତିର ଅନୁମୋଦିତ ପ୍ରସ୍ତାବଦ୍ୱାରା ଏହାର ବ୍ୟତିକ୍ରମ ହୋଇପାରିବ ।

---

* ଉପଯୁକ୍ତ ଜ୍ଞାନ କହିଲେ ବୁଝିବାକୁ ହେବ ଯେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାରେ ଡିଗ୍ରୀ ଥିବ ଓ/ବା ସେହି ବିଷୟରେ ଗବେଷଣା, ଶିକ୍ଷାଦାନ, ଲେଖାଲେଖି ବା ସେହି କ୍ଷେତ୍ରରେ କାର୍ଯ୍ୟ କରୁଥିବେ ବା କରିଥିବେ କିମ୍ବା ବିଜ୍ଞାନ ପ୍ରଚାର ବା ପ୍ରସାରରେ ଆଗ୍ରହୀ ହୋଇଥିବେ । ତେବେ ଏ ବିଷୟରେ ଶେଷ ସିଦ୍ଧାନ୍ତ ସମିତିଦ୍ୱାରା ସ୍ଥିର ହୋଇ ଗୃହୀତ ହେବ ।

** ଯେଉଁ ସଭ୍ୟ ବର୍ଷକୁ ଅନ୍ତତଃ ପାଞ୍ଚଥର ସମିତିର ସାଧାରଣ ଅଧିବେଶନରେ ଯୋଗ ଦେଇଥିବେ, ଅନ୍ତତଃ ବିଜ୍ଞାନ ସମ୍ବନ୍ଧୀୟ ଗୋଟିଏ ପ୍ରବନ୍ଧ ପାଠ କରିଥିବେ ଏବଂ ସମିତିର ବିଭିନ୍ନ କାର୍ଯ୍ୟକ୍ରମରେ ସହଯୋଗ କରିଥିବେ, ତାଙ୍କୁ ସକ୍ରିୟ ସଭ୍ୟରୂପେ ବିଚାର କରାଯିବ ।

## କର୍ମକର୍ତ୍ତା ନିର୍ବାଚନ

ସମିତିର ପରିଚାଳନାପାଇଁ ଏକ କାର୍ଯ୍ୟନିର୍ବାହୀ ସମିତି ରହିବ । ପ୍ରତିବର୍ଷ କର୍ମକର୍ତ୍ତାମାନେ କାର୍ଯ୍ୟନିର୍ବାହୀ ସମିତିକୁ ନିର୍ବାଚିତ ହେବେ ।

**ଉପଧାରା - (୧) ସଭାପତି :** ପନ୍ଦରବର୍ଷ କିମ୍ବା ତଦୂର୍ଦ୍ଧ୍ବକାଳ ସକ୍ରିୟ ସଭ୍ୟ ରହି ଆସିଥିବା ଅଭିଜ୍ଞ ବ୍ୟକ୍ତି ସଭାପତିରୂପେ ନିର୍ବାଚିତ ହେବେ । ସେ ସାଧାରଣ ଅଧିବେଶନ, ବିଶେଷ ଅଧିବେଶନ ଏବଂ ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରିବେ ।

**ଉପଧାରା - (୨) ଉପସଭାପତି :** ପନ୍ଦରବର୍ଷ କିମ୍ବା ତଦୂର୍ଦ୍ଧ୍ବକାଳ ସକ୍ରିୟ ସଭ୍ୟ ରହି ଆସିଥିବା ଅଭିଜ୍ଞ ବ୍ୟକ୍ତି ଉପସଭାପତି ରୂପେ ନିର୍ବାଚିତ ହେବେ । ସଭାପତିଙ୍କ ଅନୁପସ୍ଥିତିରେ ଉପସଭାପତି ସମସ୍ତ ଅଧିବେଶନରେ ସଭାପତିଙ୍କ ଦାୟିତ୍ୱ ତୁଲାଇବେ ।

ସଭାପତି ଓ ଉପ-ସଭାପତି ଉଭୟେ ଅନୁପସ୍ଥିତ ଥିଲେ ଉପସ୍ଥିତ ସଭ୍ୟମାନଙ୍କ ମଧ୍ୟରୁ କେହି ଜଣେ ସଭାପତିରୂପେ ମନୋନୀତ ହେବେ ।

**ଉପଧାରା - (୩) ସମ୍ପାଦକ :** ସକ୍ରିୟ ସଭ୍ୟମାନଙ୍କ ମଧ୍ୟରୁ ଯେକୌଣସି ସଭ୍ୟ ସମ୍ପାଦକ ରୂପେ ନିର୍ବାଚିତ ହୋଇପାରିବେ । ସମ୍ପାଦକ ସଭାପତି / ଉପସଭାପତିଙ୍କ ପରାମର୍ଶକ୍ରମେ କାର୍ଯ୍ୟନିର୍ବାହୀ ମୁଖ୍ୟରୂପେ କାର୍ଯ୍ୟ ସମ୍ପାଦନ କରିବେ ।

**ଉପଧାରା - (୪) ଯୁଗ୍ମ ସମ୍ପାଦକ :** ସକ୍ରିୟ ସଭ୍ୟମାନଙ୍କ ମଧ୍ୟରୁ ଯେକୌଣସି ସଭ୍ୟ ଯୁଗ୍ମ ସମ୍ପାଦକରୂପେ ନିର୍ବାଚିତ ହୋଇପାରିବେ । ଯୁଗ୍ମସମ୍ପାଦକ ସମ୍ପାଦକଙ୍କ ସହ ସହଯୋଗ ରକ୍ଷାକରି ସମିତିର କାର୍ଯ୍ୟ ପରିଚାଳନାରେ ଅଂଶଗ୍ରହଣ କରିବେ । ସମ୍ପାଦକଙ୍କ ଅନୁପସ୍ଥିତିରେ ସେ ସମ୍ପାଦକ ଦାୟିତ୍ୱ ନିର୍ବାହ କରିବେ ।

**ଉପଧାରା - (୫) କୋଷାଧ୍ୟକ୍ଷ :** ସମିତିର ଆୟବ୍ୟୟ ସମ୍ପର୍କୀୟ ହିସାବପାଇଁ ଜଣେ କୋଷାଧ୍ୟକ୍ଷ ସମିତିଦ୍ୱାରା ନିର୍ବାଚିତ ହେବେ । ସମ୍ପାଦକ ଓ କୋଷାଧ୍ୟକ୍ଷଙ୍କ ମିଳିତ ନାମରେ ସମିତିର ସମସ୍ତ ପ୍ରକାର ପାଣ୍ଠି ବ୍ୟାଙ୍କ୍ ବା ପୋଷ୍ଟଅଫିସରେ ଜମା ରହିବ ଏବଂ ଦୁଇ ଜଣଙ୍କ ମିଳିତ ଦସ୍ତଖତରେ ଏହି ଟଙ୍କା ଉଠାଇ ହେବ । ବିଗତବର୍ଷର ଆୟବ୍ୟୟ ବିବରଣୀ ବିଦାୟୀ କୋଷାଧ୍ୟକ୍ଷ ଜାନୁୟାରୀ ମାସରେ ସମିତିର ପ୍ରଥମ ଅଧିବେଶନରେ ଉପସ୍ଥାପିତ କରିବେ । ଆୟବ୍ୟୟର ହିସାବ ଉପଯୁକ୍ତ ନିରୀକ୍ଷକଙ୍କଦ୍ୱାରା ଯାଞ୍ଚ କରାଯାଇଥିବ ।

**ଉପଧାରା - (୬) ପ୍ରକାଶନ ସମ୍ପାଦକ :** ପ୍ରତିବର୍ଷ ଜଣେ 'ପ୍ରକାଶନ-ସମ୍ପାଦକ' ନିର୍ବାଚିତ ହେବେ । ଆବଶ୍ୟକସ୍ଥଳେ ସେ ସମ୍ପାଦକଙ୍କଠାରୁ ସମିତିଦ୍ୱାରା ଗୃହୀତ ପ୍ରବନ୍ଧମାନ ସଂଗ୍ରହ କରି ଏବଂ ଯଥାର୍ଥଭାବେ ସମ୍ପାଦନା କରି ବା କରାଇ ପୁସ୍ତକ ଓ ପତ୍ରିକା ପ୍ରକାଶ କରାଇବେ । ପୁସ୍ତକ ଓ ପତ୍ରିକା ପ୍ରକାଶନ ନିମିତ୍ତ ସେ ସମିତିର ସମ୍ମତି ନେଇ କାର୍ଯ୍ୟ କରିବେ ।

**ଉପଧାରା - (୭) କାର୍ଯ୍ୟନିର୍ବାହୀ ସଭ୍ୟ :** ଉପରୋକ୍ତ କର୍ମକର୍ତ୍ତାଙ୍କ ବ୍ୟତୀତ ସଦ୍ୟ ଅବ୍ୟାହତି ନେଇଥିବା ସମ୍ପାଦକ ଏବଂ ଅନ୍ୟ ଚାରି ଜଣ ସଭ୍ୟଙ୍କୁ ସମିତିର କାର୍ଯ୍ୟନିର୍ବାହୀ ସଭ୍ୟରୂପେ ନିର୍ବାଚନ କରାଯିବ ।

ସମିତିର ବିଭିନ୍ନ କାର୍ଯ୍ୟକ୍ରମର ରୂପାୟନ ଏବଂ ପର୍ଯ୍ୟାଲୋଚନାପାଇଁ କାର୍ଯ୍ୟନିର୍ବାହୀ ସମିତିର ଅଧିବେଶନ ବର୍ଷକୁ ଅନ୍ତତଃ ଚାରିଥର ବସିବ । ଆବଶ୍ୟକସ୍ଥଳେ କାର୍ଯ୍ୟନିର୍ବାହୀ ସମିତି ନିଜଦ୍ୱାରା ଗଠିତ ସ୍ୱତନ୍ତ୍ର ସମିତିକୁ ନିର୍ଦ୍ଦିଷ୍ଟ ଦାୟିତ୍ୱ ପ୍ରଦାନ କରିପାରିବେ ।

**ଉପଧାରା - (୮) କୋରମ୍ :** ସମିତି ସମ୍ବନ୍ଧୀୟ କୌଣସି ପ୍ରସ୍ତାବ ଗ୍ରହଣ କରିବାପାଇଁ ଏବଂ ନିର୍ବାଚନପାଇଁ କୋରମ ରୂପେ ସାଧାରଣ ଅଧିବେଶନରେ ଅନ୍ତତଃ ଦଶ ଜଣ ସଭ୍ୟଙ୍କ ଉପସ୍ଥିତି ଆବଶ୍ୟକ । ପ୍ରବନ୍ଧ ପାଠ ପାଇଁ କୋରମ୍ ସର୍ତ୍ତ ଲାଗୁହେବ ନାହିଁ ।

**ଉପଧାରା - (୯) :** ଉପରୋକ୍ତ ଯେକୌଣସି କର୍ମକର୍ତ୍ତାଙ୍କ ବିରୋଧରେ ଅନାସ୍ଥାପ୍ରସ୍ତାବ ସମିତିର ବିଶେଷ ଅଧିବେଶନରେ ଉପସ୍ଥିତ ଥିବା ଦୁଇ-ତୃତୀୟାଂଶ ସକ୍ରିୟ ସଭ୍ୟଙ୍କଦ୍ୱାରା ଗୃହୀତ ହେବା ଦରକାର । ବିଶେଷ ଅଧିବେଶନ ଡାକିବାପାଇଁ ଅନ୍ୟୂନ ଦଶ ଜଣ ସଭ୍ୟ ଲିଖିତ ଆବେଦନ କରିବେ । ଏହି ଆବେଦନ କାର୍ଯ୍ୟନିର୍ବାହୀ ସମିତିଦ୍ୱାରା ଅନୁମୋଦିତ ହେବ ।

**ନିୟମ ୫ - ସମିତିର ଅଧିବେଶନର ନିୟମାବଳୀ**

ସମିତିର ସମସ୍ତ ପ୍ରକାର କାର୍ଯ୍ୟ ପରିଚାଳନାପାଇଁ ନିମ୍ନୋକ୍ତ ଚାରିପ୍ରକାର ଅଧିବେଶନର ଆୟୋଜନ କରାହେବ ।

ଧାରା - (କ) ସାଧାରଣ ଅଧିବେଶନ ।

ଧାରା - (ଖ) ବିଶେଷ ଅଧିବେଶନ ।

ଧାରା - (ଗ) ପ୍ରତିଷ୍ଠା ଦିବସ ଅଧିବେଶନ ।

ଧାରା - (ଘ) ବାର୍ଷିକ ଅଧିବେଶନ ।

**ଧାରା (କ) ସାଧାରଣ ଅଧିବେଶନ**

**ଉପଧାରା - (୧) :** ପ୍ରବନ୍ଧାଦି ପାଠ ଓ ସମିତିର କାର୍ଯ୍ୟ ପରିଚାଳନା ସମ୍ବନ୍ଧୀୟ କାର୍ଯ୍ୟ ପ୍ରଭୃତି ଲାଗି ସମ୍ପାଦକ ସାଧାରଣ ଅଧିବେଶନ ଡକାଇବେ । ସାଧାରଣତଃ ପ୍ରତି ମାସରେ ଦୁଇ ଥର ଏ ପ୍ରକାର ଅଧିବେଶନ ଅନୁଷ୍ଠିତ ହେବ । ସ୍ଥାନ, ସମୟ ଓ କାର୍ଯ୍ୟକ୍ରମ ସମ୍ପାଦକ ଠିକ୍ କରିବେ ।

**ଉପଧାରା - (୨) :** କୌଣସି କାରଣରୁ ଯଦି ସମ୍ପାଦକ ସାଧାରଣ ଅଧିବେଶନ ଗ୍ରୀଷ୍ମଛୁଟି ସମୟ ଛଡ଼ା ଅନ୍ୟ ସମୟରେ ଦୁଇ ମାସ ଧରି ନ ଡାକନ୍ତି କିମ୍ବା କୌଣସି କାରଣରୁ ଯଦି ସଭ୍ୟମାନେ ସମ୍ପାଦକ ସାଧାରଣ ଅଧିବେଶନ ଡକାଇବାରେ ଅସମର୍ଥ ବୋଲି ଭାବନ୍ତି, ତା'ହେଲେ ସଭାପତିଙ୍କଦ୍ୱାରା ସାଧାରଣ ଅଧିବେଶନ ଆହୂତ ହୋଇପାରିବ । ଏପ୍ରକାର ଅଧିବେଶନ ବିଶେଷ ଅଧିବେଶନରୂପେ ପରିଗଣିତ ହେବ ।

**ଧାରା (ଖ) ବିଶେଷ ଅଧିବେଶନ**

କୌଣସି ବୈଜ୍ଞାନିକ ବା ବିଜ୍ଞାନରେ ଆଗ୍ରହୀ ବ୍ୟକ୍ତିଙ୍କର ବକ୍ତୃତା ଉଦ୍ଦେଶ୍ୟରେ କିମ୍ବା ଜନସାଧାରଣଙ୍କ ଲାଗି, ସମିତି ସଭ୍ୟଙ୍କର ବକ୍ତୃତା ଲାଗି କିମ୍ବା ଅନ୍ୟକୌଣସି କାରଣପାଇଁ ଯେଉଁ ସଭା ଆହୂତ ହେବ ତାହା ମଧ୍ୟ ବିଶେଷ ଅଧିବେଶନ ହିସାବରେ ପରିଗଣିତ ହେବ । ଏ ପ୍ରକାର ଅଧିବେଶନର ବିବରଣୀ ସାଧାରଣ ଅଧିବେଶନର ବିବରଣୀଠାରୁ ସ୍ୱତନ୍ତ୍ର ଭାବରେ ଲିପିବଦ୍ଧ ହେବ ଏବଂ ଏହା ପରବର୍ତ୍ତୀ ସାଧାରଣ ଅଧିବେଶନରେ ଉପସ୍ଥାପିତ ହେବ ।

**ଧାରା (ଗ) ପ୍ରତିଷ୍ଠାଦିବସ ଅଧିବେଶନ**

ପ୍ରତିବର୍ଷ ଅଗଷ୍ଟ ମାସ ୭ ତାରିଖ ଦିନ ସମିତିର ପ୍ରତିଷ୍ଠା ଦିବସ ପାଳନ କରାଯିବ । ଏଥିପାଇଁ ସମିତି ବାହାରୁ କେହି ଜଣେ ବିଜ୍ଞାନୀ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଆସିବେ । ଏଥିରେ ବିଜ୍ଞାନ ସମ୍ବନ୍ଧୀୟ ଆଲୋଚନା କରାଯିବ ଓ ପୁରସ୍କୃତ ଛାତ୍ରଛାତ୍ରୀଙ୍କୁ ପୁରସ୍କାର ପ୍ରଦାନ କରାଯିବ ।

**ଧାରା (ଘ) ବାର୍ଷିକ ଅଧିବେଶନ**

ପ୍ରତିବର୍ଷ ଡିସେମ୍ବର ମାସରେ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେବ । ଏଥିରେ ସମିତିର ବାହାରୁ କେହି ଜଣେ ବିଜ୍ଞାନୀ ବା ବିଜ୍ଞାନପ୍ରେମୀ ମୁଖ୍ୟ ଅତିଥିରୂପେ ନିମନ୍ତ୍ରିତ ହୋଇ ଆସିବେ । ମୁଖ୍ୟବକ୍ତା ବିଜ୍ଞାନ ସମ୍ବନ୍ଧୀୟ ଯେକୌଣସି ବିଷୟରେ ଏକ ବକ୍ତୃତା ପ୍ରଦାନ କରିବେ । ଏହି ସଭାରେ ବିଜ୍ଞାନ ସମ୍ବନ୍ଧୀୟ ସମ୍ମାନ, ଆଲୋଚନା, ପୁସ୍ତକ ପ୍ରଦର୍ଶନୀ, ବିଜ୍ଞାନ ଆଧାରିତ ଚଳଚ୍ଚିତ୍ର ପ୍ରଦର୍ଶନ ଏବଂ ସମ୍ମାନ ପ୍ରଦାନ ପ୍ରଭୃତି କାର୍ଯ୍ୟକ୍ରମ ସାଧାରଣତଃ ସ୍ଥାନ ପାଇପାରିବ ।

**ନିୟମ ୬ - ପୁସ୍ତକ ପ୍ରକାଶନ**

**ଧାରା - (କ) :** ସଭ୍ୟମାନଙ୍କଦ୍ୱାରା ସମିତିରେ ପଠିତ ହୋଇଥିବା ଲେଖାଗୁଡ଼ିକ ସଂଗୃହୀତ ହୋଇ ସମିତି ତରଫରୁ ବହି ଆକାରରେ ପ୍ରକାଶିତ ହୋଇପାରିବ ।

**ଧାରା - (ଖ) :** ଏକାଧିକ ପ୍ରବନ୍ଧ ସଂକଳିତ ହୋଇ ପ୍ରକାଶିତ ହୋଇଥିବା ବହିର ବିକ୍ରି ଲବ୍ଧାଂଶ ଉପରେ ସେହି ବହିରେ ସ୍ଥାନ ପାଇଥିବା ପ୍ରବନ୍ଧ ଲେଖକମାନଙ୍କର କୌଣସି ଦାବି ରହିବ ନାହିଁ । କିନ୍ତୁ ଜଣେ ଲେଖକଙ୍କର ଯଦି କୌଣସି ପୂରା ବହିର ପ୍ରକାଶନ ଭାର ସମିତି ଗ୍ରହଣ କରେ, ତା'ହେଲେ ସମିତି ସେହି ସମ୍ପର୍କରେ ପାଇଥିବା ଲାଭାଂଶର ଶତକଡ଼ା ପଚିଶଭାଗ ଓ ପାଞ୍ଚଖଣ୍ଡ ବହି ଲେଖକଙ୍କୁ ଦେବ । କୌଣସି ବହିର ପରବର୍ତ୍ତୀ ସଂସ୍କରଣପାଇଁ ଏହି ନିୟମ ପ୍ରଯୁଜ୍ୟ ନୁହେଁ ।

**ଧାରା - (ଗ) :** ସମିତିଦ୍ୱାରା ପ୍ରକାଶିତ କୌଣସି ପୁସ୍ତକ ପ୍ରଥମେ ପ୍ରକାଶିତ ହେଲା ପରେ ପରେ ସେଥିରୁ ଖଣ୍ଡିଏ ଲେଖାଏଁ ପୁସ୍ତକ ପ୍ରତ୍ୟେକ ସକ୍ରିୟ ସଭ୍ୟ ବିନା ଦେୟରେ ପାଇବେ । ବହିର ପରବର୍ତ୍ତୀ ସଂସ୍କରଣପାଇଁ ଏହା ପ୍ରଯୁଜ୍ୟ ନୁହେଁ ।

**ଧାରା - (ଘ) :** ଯଦି ଆବଶ୍ୟକ ହୁଏ, ସମିତିର ପୁସ୍ତକ ଓ ପତ୍ରିକା ପ୍ରକାଶନ ଲାଗି ବାହାର ପ୍ରକାଶକଙ୍କ ସହିତ ପ୍ରତ୍ୟେକ ପୁସ୍ତକ ଓ ପତ୍ରିକା ସମ୍ପର୍କରେ ସମିତିର ସ୍ୱାର୍ଥ ଅନୁସାରେ ପ୍ରକାଶନ ସମ୍ପାଦକ ଆଇନ ଅନୁଯାୟୀ ସମିତି ତରଫରୁ ଲେଖାପଢ଼ି କରିବେ । ପ୍ରକାଶନ ସମ୍ପାଦକ କୌଣସି ପୁସ୍ତକ ପ୍ରକାଶ ନେଇ ସେଭଳି ଚୁକ୍ତି କରିବା ପୂର୍ବରୁ ସମିତିର ଅନୁମୋଦନ ଆବଶ୍ୟକ ।

**ଧାରା - (ଙ) :** ସମିତିର ପୁସ୍ତକ କେଉଁ ଉପାୟରେ ଭଲ ଭାବରେ ବିକ୍ରି ହୋଇପାରିବ, ସେ ସମ୍ପର୍କୀୟ ବ୍ୟବସ୍ଥା ପ୍ରକାଶନ ସମ୍ପାଦନ କାର୍ଯ୍ୟନିର୍ବାହୀ ସମିତିର ମତ ନେଇ କରିପାରିବେ ।

**ନିୟମ ୭ - ସମିତିର ପାଣ୍ଠି**

**ଧାରା - (କ) ସଞ୍ଚିତ ପାଣ୍ଠି :** ଏହି ପାଣ୍ଠିରେ ସଭ୍ୟମାନଙ୍କଠାରୁ ଆଦାୟ ଓ ସମିତିଦ୍ୱାରା ନିର୍ଦ୍ଧାରିତ ଅନ୍ୟାନ୍ୟ ସାମୟିକ ଚାନ୍ଦା ଗଚ୍ଛିତ ରହିବ । ଏହି ପାଣ୍ଠିରୁ ସମିତିର ଦୈନନ୍ଦିନ ଖର୍ଚ୍ଚ କରାଯାଇପାରିବ । ପ୍ରତ୍ୟେକ ସଭ୍ୟ ବର୍ଷକୁ ସମିତିଦ୍ୱାରା ନିର୍ଦ୍ଧାରିତ ନିର୍ଦ୍ଦିଷ୍ଟ ଚାନ୍ଦା ଦେବେ । ଏହି ଚାନ୍ଦା ବର୍ଷକୁ କେତେ ହେବ ତାହା ସାଧାରଣ ଅଧିବେଶନରେ ଆଲୋଚିତ ହୋଇ ଠିକ୍ ହେବ ।

**ଧାରା - (ଖ) ସ୍ଥାୟୀ ପାଣ୍ଠି :** ସମସ୍ତ ପ୍ରକାର ଦାନ ଓ ଅନ୍ୟାନ୍ୟ ବାହାର ବ୍ୟକ୍ତିଙ୍କଠାରୁ ଆଦାୟ ହେଉଥିବା ଚାନ୍ଦା ଏବଂ ପୃଷ୍ଠପୋଷକମାନଙ୍କର ଦେୟ ଆଦି ଅର୍ଥ ଏହି ପାଣ୍ଠିରେ ଗଚ୍ଛିତ ରହିବ । ସାଧାରଣତଃ ଏହା ପୁସ୍ତକ ପ୍ରକାଶନ, ସମିତିର ବାସଗୃହ ନିର୍ମାଣ ଓ ଅନ୍ୟାନ୍ୟ ସ୍ଥାୟୀ କାର୍ଯ୍ୟରେ ଖର୍ଚ୍ଚ ହୋଇପାରିବ । ପୁସ୍ତକ ସମ୍ବନ୍ଧୀୟ ଆୟବ୍ୟୟ ଓ ପୁସ୍ତକ ପ୍ରକାଶନ ଲାଗି ନିର୍ଦ୍ଦିଷ୍ଟ ଚାନ୍ଦା ବା ଦାନ ଏହି ପାଣ୍ଠିରେ ରହିବ । ଏହି ପାଣ୍ଠିରେ ଜମାଥିବା ଟଙ୍କା ସମିତିର ଯେକୌଣସି କାର୍ଯ୍ୟପାଇଁ ବ୍ୟୟ କରିବାର ଚୂଡ଼ାନ୍ତ ଅଧିକାର କାର୍ଯ୍ୟନିର୍ବାହୀ ସମିତି ଉପରେ ନ୍ୟସ୍ତ ରହିବ । ପାଣ୍ଠି ସମ୍ବନ୍ଧୀୟ ଆବଶ୍ୟକ ପରିବର୍ତ୍ତନ ମଧ୍ୟ କାର୍ଯ୍ୟନିର୍ବାହୀ ସମିତି ନିର୍ଦ୍ଧାରଣ କରିପାରିବେ ।

**ନିୟମ ୮ - ସମିତିର କାର୍ଯ୍ୟକାଳ ଓ ଭବିଷ୍ୟତ**

**ଧାରା - (କ) :** ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ଓ ପୃଷ୍ଠପୋଷକମାନଙ୍କ ଭିତରୁ ତିନି-ଚତୁର୍ଥାଂଶ ସଭ୍ୟଙ୍କଦ୍ୱାରା ଲିଖିତ ଆବେଦନ ଓ ଭୋଟଦ୍ୱାରା ଏହି ସମିତିର କାର୍ଯ୍ୟକାଳ ସମାପ୍ତ କରାଯାଇପାରିବ ।

**ଧାରା - (ଖ) :** ଏହିପରି ଭାବରେ ସମିତିର କାର୍ଯ୍ୟକାଳ ଶେଷ ହେଲାପରେ ସମିତିର ସମସ୍ତ ପାଣ୍ଠି, ପୁସ୍ତକଗତ ସ୍ୱତ୍ୱ ଓ ଅନ୍ୟାନ୍ୟ ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି କେଉଁ ଅନୁଷ୍ଠାନକୁ ଦାନ କରାଯିବ ତାହା ସାଧାରଣ ଅଧିବେଶନରେ ସ୍ଥିର କରାଯିବ ।

**ଧାରା - (ଗ) :** ପୁରସ୍କାର, ସ୍ମୃତି, ସମ୍ମାନ ଇତ୍ୟାଦି ଉଦ୍ଦେଶ୍ୟରେ ପ୍ରଦତ୍ତ ଅର୍ଥ ସଂପୃକ୍ତ ଦାତା କିମ୍ବା ସେମାନଙ୍କର ଉତ୍ତରାଧିକାରୀଙ୍କୁ ଫେରସ୍ତ ଦିଆଯିବ ।

**ନିୟମ ୧୧** - ଉପରୋକ୍ତ ମୂଳ ନିୟମାବଳୀ ବ୍ୟତୀତ ସମିତିର ସାଧାରଣ କାର୍ଯ୍ୟ ପରିଚାଳନା, ସମିତିର କର୍ମକର୍ତ୍ତା ଓ ସଭ୍ୟଙ୍କର କାର୍ଯ୍ୟ ନିୟନ୍ତ୍ରଣ ଓ ପରିଚାଳନାପାଇଁ ଯେଉଁସବୁ ସାମୟିକ ନିୟମାବଳୀ ନିର୍ଦ୍ଧାରିତ ହେବ ସେସବୁ ଅଲଗା ଭାବରେ କାଳାନୁକ୍ରମେ ଲିପିବଦ୍ଧ ହେବ । ସମିତିର ମୂଳ ନିୟାମାବଳୀର ବିରୋଧାଚରଣ କରୁ ନ ଥିବା ଏ ପ୍ରକାର ନିୟମାବଳୀ ବିଶେଷ ଅଧିବେଶନରେ ଗୃହୀତ ହେବା ଆବଶ୍ୟକ । ସଂଶୋଧିତ ନିୟମାବଳୀ ତା୦୧.୦୧.୨୦୦୭ ଠାରୁ କାର୍ଯ୍ୟକାରୀ ହେବ ।

**ନିୟମ ୧୨** - ଏଠାରେ ଲିପିବଦ୍ଧ ହୋଇଥିବା ନିୟମାବଳୀ କିମ୍ବା ଏହାର ବହିର୍ଗତ ଅନ୍ୟ ଯେକୌଣସି ବିଷୟରେ ଶେଷ ନିଷ୍ପତ୍ତି ସମିତି କରିପାରିବ ।

**ନିୟମ ୧୩** - ସମିତିକୁ ଅବଗତ କରାଇ ସମିତିର ପରାମର୍ଶକ୍ରମେ ସମିତି ସଂକ୍ରାନ୍ତ ଆଇନଗତ ଯାବତୀୟ ଆପତ୍ତି ଅଭିଯୋଗ ସମ୍ବନ୍ଧୀୟ କାର୍ଯ୍ୟପନ୍ଥା ସମିତି ତରଫରୁ ସମ୍ପାଦକ ପରିଚାଳନା କରିବେ ।



# ବିଭିନ୍ନ ବାର୍ଷିକ ଉତ୍ସବର ବିବରଣୀ

| ବାର୍ଷିକ ଉତ୍ସବ ସଂଖ୍ୟା | ତାରିଖ | ସଭାପତି | ମୁଖ୍ୟଅତିଥି | ସମ୍ମାନିତ ଅତିଥି/ବକ୍ତା | ସ୍ୱାଗତ ଭାଷଣ | ସମ୍ମାନ |
|---|---|---|---|---|---|---|
| ୧ମ | ୧୯୫୧ | ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ | ଡଃ ହରିବନ୍ଧୁ ମହାନ୍ତି | – | – | ବିଜ୍ଞାନର ନୂତନ ଦିଗ |
| ୨ୟ | ୧୯୫୨ | ଡାଃ ବନବିହାରୀ ପଟ୍ଟନାୟକ | ଡଃ ପ୍ରାଣକୃଷ୍ଣ ପରିଜା | – | – | ବଂଶାନୁକୃତି |
| ୩ୟ | ୧୯୫୩ | ଡଃ ବଳଭଦ୍ର ପ୍ରସାଦ | ଶ୍ରୀ ନୀଳମଣି ସେନାପତି | – | – | ମାନବ ସେବାରେ ବିଜ୍ଞାନ |
| ୪ର୍ଥ | ୧୯୫୪ | ରାୟସାହେବ ନାରାୟଣ ମିଶ୍ର | ଡାଃ ଜ୍ୟୋସ୍ନା ଦେଭ | – | – | ଓଡ଼ିଶାରେ ବିଜ୍ଞାନର ପ୍ରୟୋଗ |
| ୫ମ | ୧୯୫୫ | ଶ୍ରୀ ଲୋକନାଥ ମିଶ୍ର | ଡାଃ ଆଇଜାକ୍ ସାନ୍ତ୍ରା | – | – | ସ୍ୱାସ୍ଥ୍ୟ |
| ୬ଷ୍ଠ | ୧୯୫୬ | ଡାଃ ଗୋପାଳଚନ୍ଦ୍ର ପଟ୍ଟନାୟକ | ଡାଃ କାଶୀନାଥ ମିଶ୍ର | – | – | ବିଜ୍ଞାନ ଓ ଶିକ୍ଷା |
| ୭ମ | ୧୯୫୭ | ଡାଃ ରାଧାକୃଷ୍ଣ ମହାନ୍ତି | ଡଃ ହରେକୃଷ୍ଣ ମହତାବ | – | – | ସମାଜ ଓ ବିଜ୍ଞାନ |
| ୮ମ | ୧୯୫୮ | ଡଃ ବିଦ୍ୟାଧର ପାଢ଼ୀ | ଶ୍ରୀ ଗୁରୁଚରଣ ମହାନ୍ତି | – | – | ମହାଶୂନ୍ୟ ଭ୍ରମଣ |
| ୯ମ | ୧୯୫୯ | ଡଃ ରାଧାନାଥ ରଥ | ଡାଃ ବାଳମୁକୁନ୍ଦ ନାୟକ | – | – | ପରମାଣୁର ଶାନ୍ତିକାରକ ପ୍ରୟୋଗ |
| ୧୦ମ | ୧୯୬୦ | ଡଃ ସଦାଶିବ ମିଶ୍ର | ଶ୍ରୀ ଲିଙ୍ଗରାଜ ଦାଶ | – | – | ଆବିଷ୍କାର ଓ ଉଦ୍ଭାବନ |
| ୧୧ଶ | ୧୯୬୧ | ଡଃ ଗୋକୁଳାନନ୍ଦ ମହାପାତ୍ର | ଡାଃ ଡେଭିଡ୍ ରବିନ ସାହୁ | – | – | ଦୀର୍ଘାୟୁ ଜୀବନ |
| ୧୨ଶ | ୧୯୬୨ | ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ | ଶ୍ରୀ ତାରିଣୀଚରଣ ମହାପାତ୍ର | – | – | ଦୂରଦ୍ରଷ୍ଟା ବୈଜ୍ଞାନିକ |
| ୧୩ଶ | ୧୯୬୩ | ଡଃ ବିଶ୍ୱନାଥ ସାହୁ | ଶ୍ରୀ ବାମାଚରଣ ଦାସ | – | – | ବିଜ୍ଞାନର ପରିସୀମା |
| ୧୪ଶ | ୧୯୬୪ | ଡଃ ବସନ୍ତ କୁମାର ବେହୁରା | ଡଃ ବଂଶୀଧର ସାମନ୍ତରାୟ | – | – | ବିଜ୍ଞାନ ଶିକ୍ଷା |
| ୧୫ଶ | ୧୯୬୫ | ଡଃ ହରିହର ପଟ୍ଟନାୟକ | ଶ୍ରୀ ବିଶ୍ୱନାଥ ମିଶ୍ର | – | – | ଆବିଷ୍କାର ଓ ଉଦ୍ଭାବନ |
| ୧୬ଶ | ୧୯୬୬ | ଶ୍ରୀମତୀ ଶାନ୍ତିଲତା କାନୁନ୍‌ଗୋ | ଡ଼ଃ ଗଣେଶ୍ୱର ବିଶ୍ୱାଳ | – | – | ପିଲାଙ୍କ ପାଇଁ |
| ୧୭ଶ | ୧୯୬୭ | ଶ୍ରୀ ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି | ଡାଃ ଶରତ ଚନ୍ଦ୍ର ମିଶ୍ର | – | – | ସ୍ମରଣୀୟ ଗବେଷଣା |
| ୧୮ଶ | ୧୯୬୮ | ଚୌଧୁରୀ ବିଚିତ୍ରାନନ୍ଦ ନନ୍ଦ | ଶ୍ରୀ ନିତ୍ୟାନନ୍ଦ ମହାପାତ୍ର | – | – | ଉତ୍ପାଦନ |
| ୧୯ଶ | ୧୯୬୯ | ଶ୍ରୀ ଲକ୍ଷ୍ମୀନାରାୟଣ ନନ୍ଦ | ଡାଃ ରଘୁନାଥ ସାହୁ | – | – | ଜୀବନପାଇଁ ଜଳ |
| ୨୦ଶ | ୧୯୭୦ | ଡଃ କୃଷ୍ଣମଣି ସାମଲ | ଡାଃ କିଶୋର ଚନ୍ଦ୍ର ପଟ୍ଟନାୟକ | – | – | ମୋ ମତରେ |
| ୨୧ତମ | ୧୯୭୧ | ଡଃ ସୁକୁମାର ଅଦିତ୍ୟ | ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଳ | – | – | ପ୍ରାଚୀନ ଭାରତରେ ବିଜ୍ଞାନ |
| ୨୨ତମ | ୧୯୭୨ | ଡଃ ପତିତପାବନ ମିଶ୍ର | ଡଃ ବ୍ରଜବିହାରୀ ପଟ୍ଟନାୟକ | – | – | ଯୁଦ୍ଧରେ ବିଜ୍ଞାନ |
| ୨୩ତମ | ୧୯୭୩ | ଡାଃ କେଶବ ଚନ୍ଦ୍ର ସାହୁ | ଡଃ ପ୍ରଫୁଲ୍ଲ କୁମାର ଜେନା | – | – | ଓଡ଼ିଶାରେ ରାସାୟନିକ ଶିଳ୍ପ |
| ୨୪ତମ | ୧୯୭୪ | ଶ୍ରୀ ସଦାନନ୍ଦ ଦେଓସିଆ | ଶ୍ରୀ ଦୟାନିଧି ଚୌଧୁରୀ | – | – | ଦୂଷିତ ପରିବେଶ |
| ୨୫ତମ | ୫.୯.୭୬ | ଡଃ ରାଧାନାଥ ରଥ | ଶ୍ରୀ ଯଦୁନାଥ ଦାସମହାପାତ୍ର | ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର | ଡଃ ମହେନ୍ଦ୍ର କୁମାର ରାଉତ | ଓଡ଼ିଶାରେ ସାପ |
| ୨୬ତମ | ୧୪.୫.୭୮ | ଡାଃ ଜୟକୃଷ୍ଣ ମହାନ୍ତି | ଡାଃ ଗିରିଜା ଶଙ୍କର ଦାସମହାପାତ୍ର | – | ଡଃ ମହେନ୍ଦ୍ର କୁମାର ରାଉତ | କର୍କଟରୋଗ, ଏହାର କାରଣ, ନିରାକରଣ ଓ ଚିକିତ୍ସା |
| ୨୭ତମ | ୧୮.୩.୭୯ | ଡଃ ପ୍ରଶାନ୍ତ କୁମାର ମିଶ୍ର | ଶ୍ରୀ ତ୍ରିଲୋଚନ ପ୍ରଧାନ | ଶ୍ରୀ ପ୍ରତାପଚନ୍ଦ୍ର ମହାନ୍ତି | ଡଃ ମହେନ୍ଦ୍ର କୁମାର ରାଉତ | – |
| ୨୮ ଓ ୨୯ ତମ | ୧୨.୪.୮୧ | ଡାଃ ଜୟକୃଷ୍ଣ ମହାନ୍ତି | ଡଃ ମହେନ୍ଦ୍ର କୁମାର ରାଉତ | – | ଡଃ ଗୋକୁଳାନନ୍ଦ ମହାପାତ୍ର | ଜୀବନପାଇଁ ବିଜ୍ଞାନ |
| ୩୦ତମ | ୧୬.୫.୮୨ | ଡାଃ ଗୋପୀନାଥ ପ୍ରସାଦ ମହାନ୍ତି | ଡଃ ତ୍ରିଲୋଚନ ପ୍ରଧାନ | – | ଡଃ ଗୋକୁଳାନନ୍ଦ ମହାପାତ୍ର | ଭାରତୀୟ ବୈଜ୍ଞାନିକ |
| ୩୧ ଓ ୩୨ତମ | ୧୪.୧୦.୮୪ | ଡଃ ହରିହର ପଟ୍ଟନାୟକ | ଡାଃ ଅଭୁକାନନ୍ଦ ଷଡ଼ଙ୍ଗୀ | – | ଡଃ ଦୀନବନ୍ଧୁ ମିଶ୍ର | ଶକ୍ତି ସମସ୍ୟା |
| ୩୩ ଓ ୩୪ତମ | ୨୦.୪.୮୬ | ଡାଃ ଗୁରୁପ୍ରସାଦ ମହାନ୍ତି | ଡାଃ ଲକ୍ଷ୍ମୀନାରାୟଣ ମହାପାତ୍ର | – | ଡଃ ଗୋକୁଳାନନ୍ଦ ମହାପାତ୍ର | ମହାକାଶ |

| | | | | | | |
|---|---|---|---|---|---|---|
| ୩୫ ଓ ୩୬ ତମ | ୨.୮.୮୬ | ଡାଃ ନିମାଇଁ ଚରଣ ପଣ୍ଡା | ଡାଃ ବଳ୍ଲଭ ନାରାୟଣ ପାତ୍ର | – | ଡଃ ଗୋକୁଳାନନ୍ଦ ମହାପାତ୍ର | ସାଗର ମନ୍ଥନ |
| ୩୭,୩୮,୩୯ତମ | ୩.୯.୮୯ | ଡାଃ ଯୋଗୀନ୍ଦ୍ର ମୋ. ସେନାପତି | ଡାଃ ବିଭୂତିଭୂଷଣ ତ୍ରିପାଠୀ | ଡଃ ସଦାଶିବ ମିଶ୍ର | ଡଃ ଗୋକୁଳାନନ୍ଦ ମହାପାତ୍ର | ଆଜିର ବିଜ୍ଞାନ |
| ୪୦ତମ | ୧୧.୪.୯୦ | ଡାଃ ହରିହର ପଟ୍ଟନାୟକ | ଡଃ ସଦାଶିବ ମିଶ୍ର | – | ଡାଃ ଶୈଳେଶ୍ୱର ନନ୍ଦ | ଏକବିଂଶ ଶତାବ୍ଦୀରେ ବିଜ୍ଞାନ |
| ୪୧ତମ | ୩୧.୩.୯୧ | ଡାଃ ଯୋଗମାୟା ପଟ୍ଟନାୟକ | ଡଃ ଶିବପ୍ରସାଦ ମିଶ୍ର | – | ଡଃ କୁଳମଣି ସାମଲ | କମ୍ପ୍ୟୁଟର |
| ୪୨ତମ | ୨୬.୪.୯୨ | ଡାଃ ଗଦାଧର ମିଶ୍ର | ଡଃ ମଧୁସୂଦନ କାନୁନ୍‌ଗୋ | – | ଡାଃ କେଶବ ଚନ୍ଦ୍ର ସାହୁ | ବାର୍ଦ୍ଧକ୍ୟ ପ୍ରକ୍ରିୟା |
| ୪୩ତମ | ୧୮.୪.୯୩ | ଡାଃ ବନମାଳୀ ମହାନ୍ତି | ଡଃ ସତ୍ୟାନନ୍ଦ ଆଚାର୍ଯ୍ୟ | – | ଡାଃ ନିମାଇଁ ଚରଣ ପଣ୍ଡା | ମାନବ ସେବାରେ ବୈଜ୍ଞାନିକ ଉପକରଣ |
| ୪୪ତମ | ୧.୫.୯୪ | ଡାଃ ନିରଞ୍ଜନ ତ୍ରିପାଠୀ | ଡଃ ତ୍ରିବିକ୍ରମ ପତି | – | ଡଃ ହରିହର ପଟ୍ଟନାୟକ<br>ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି<br>ଡଃ ପ୍ରିୟତମା ଦେଓ | – |
| ୪୫ତମ | ୩୦.୪.୯୫ | ଡାଃ ବାସୁଦେବ କର | ଡଃ ରାଜେନ୍ଦ୍ର ନାରାୟଣ ମିଶ୍ର | ଶ୍ରୀ ସତ୍ୟନାରାୟଣ ପଟ୍ଟନାୟକ | ଡଃ କୁଳମଣି ସାମଲ | ଜେନେଟିକ୍ ଇଞ୍ଜିନିୟରିଂ |
| ୪୬ ଓ ୪୭ ତମ | ୧୮.୫.୯୭ | ଡାଃ ଯୋଗୀନ୍ଦ୍ର ମୋ. ସେନାପତି | ଡଃ ପ୍ରିୟମ୍ବଦା ମହାନ୍ତି ହେଜମାଦୀ | – | ଶ୍ରୀ କଲ୍ୟାଣ ମହାପାତ୍ର<br>ଶ୍ରୀ ପ୍ରମୋଦ କୁମାର ମହାପାତ୍ର | ବାୟୋଟେକ୍ନୋଲୋଜି |
| ୪୮ତମ | ୧୦.୫.୯୮ | ଡଃ ପ୍ରିୟତମା ଦେଓ | ଡାଃ ବିଭୂତିଭୂଷଣ ତ୍ରିପାଠୀ | – | ଡଃ ଦେବପ୍ରସାଦ ନନ୍ଦ<br>ଡଃ ଗୌରାଙ୍ଗ ଚନ୍ଦ୍ର ମହାନ୍ତି | ଶିଶୁର ଯତ୍ନ |
| ୪୯ତମ | ୧୦.୧.୯୯ | ଡାଃ ନିତ୍ୟାନନ୍ଦ ସ୍ୱାଇଁ | ଡଃ ଗୋକୁଳାନନ୍ଦ ଦାସ | ଡାଃ ସନାତନ ରଥ<br>ଶ୍ରୀ ବୈଷ୍ଣବ ଚରଣ ପରିଡ଼ା | ଡଃ ପ୍ରିୟତମା ଦେଓ<br>ଡଃ ଗୌରାଙ୍ଗ ଚନ୍ଦ୍ର ମହାନ୍ତି | – |
| ୫୦ତମ | ୫.୨.୨୦୦୦ | ଡଃ ରାଧାନାଥ ରଥ | ଡଃ ଗୋକୁଳାନନ୍ଦ ଦାସ | ଡାଃ ଇନ୍ଦ୍ର କି. ପଟ୍ଟନାୟକ<br>ଶ୍ରୀ କାଶୀନାଥ ମିଶ୍ର | ଡଃ ରାମକୃଷ୍ଣ କର<br>ଡଃ ବୈଷ୍ଣବ ଚରଣ ସିଂହ | ଏକବିଂଶ ଶତାବ୍ଦୀରେ ବିଜ୍ଞାନ |
| ୫୧ତମ | ୨୦୦୧ | | | ଇଂ ଗନ୍ଧର୍ବ ବେହେରା | – | – |
| ୫୨ତମ | ୨୪.୨.୦୨ | ଡାଃ ଭାସ୍କରଚନ୍ଦ୍ର ଦାଶ | ଡଃ ଶିବନାରାୟଣ ମହାପାତ୍ର | ଡଃ ପଦ୍ମଲୋଚନ ନାୟକ | – | – |
| ୫୩ତମ | ୧୬.୨.୦୩ | ଶ୍ରୀ ନିକୁଞ୍ଜ ବିହାରୀ ମିଶ୍ର | ଡାଃ ବିଜୟକୁମାର ନନ୍ଦ | ଶ୍ରୀ ଜି.ଏନ୍. ଚଇନି | – | – |
| ୫୪ତମ | ୨୨.୨.୦୪ | ଡାଃ ଲକ୍ଷ୍ମୀକାନ୍ତ ସାହୁ | ଡାଃ ଉମାକାନ୍ତ ନନ୍ଦ | ଶ୍ରୀ ରବୀନ୍ଦ୍ର କୁମାର ପଣ୍ଡା | – | – |
| ୫୫ତମ | ୧୩.୩.୦୫ | ଶ୍ରୀ ଭୀମସେନ ଦାଶ | ପ୍ର. ବିଷ୍ଣୁଚରଣାବିନ୍ଦ ମହାନ୍ତି | ପ୍ର. ନବକିଶୋର ମହାଲିକ | – | – |
| ୫୬ତମ | ୨୯.୧.୦୬ | ଡଃ ଦେବପ୍ରସାଦ ନନ୍ଦ | ଡାଃ ସରସ୍ୱତୀ ସ୍ୱାଇଁ | ଡଃ ଅମିୟ କୁମାର ବେହେରା | ଡଃ ସୁବାସିନୀ ଲେଙ୍କା | |
| ୫୭ତମ | ୩୧.୧୨.୦୬ | ଡାଃ ସୁଦର୍ଶନ ପଟ୍ଟନାୟକ | ଡାଃ ଯଦୁନାଥ ପ୍ରସାଦ ଦାସ | ଡଃ ଅମୂଲ୍ୟକୁମାର ପଣ୍ଡା | ଡଃ ରଘୁନାଥ ମହାନ୍ତି | |
| ୫୮ତମ | ୨୩.୧୨.୦୭ | ଡଃ ଗୋକୁଳାନନ୍ଦ ମହାପାତ୍ର | ପ୍ରଫେସର ବରଦାକାନ୍ତ ମିଶ୍ର | ଡଃ ଜାମ୍ବାନ କେଶରୀ ରାୟ | ଡଃ ସୁବାସିନୀ ଲେଙ୍କା | |
| ୫୯ତମ | ୨୧.୧୨.୦୮ | ଡଃ ଗୋକୁଳାନନ୍ଦ ମହାପାତ୍ର | ପ୍ରଫେସର ଓଁକାରନାଥ ମହାନ୍ତି | ପ୍ରଫେସର ନିରଞ୍ଜନ ବାରିକ | ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ | |
| ୬୦ତମ | ୧୩.୧୨.୦୯ | ଡଃ ଗୋକୁଳାନନ୍ଦ ମହାପାତ୍ର | ପ୍ରଫେସର ଦାମୋଦର ଆଚାର୍ଯ୍ୟ | ପ୍ର. ସୁରେନ୍ଦ୍ରନାଥ ପଶୁପାଳକ | ପ୍ର. ପ୍ରଭାତ କୁମାର ମିଶ୍ର | ଜଳବାୟୁ ପରିବର୍ତ୍ତନ |

# ପ୍ରତିଷ୍ଠା ଦିବସ ବିବରଣୀ

| ପ୍ରତିଷ୍ଠା ଦିବସ ସଂଖ୍ୟା | ତାରିଖ | ସଭାପତି | ମୁଖ୍ୟଅତିଥି | ମୁଖ୍ୟ ବକ୍ତା | ସ୍ୱାଗତଭାଷଣ |
|---|---|---|---|---|---|
| ୫୮ତମ | ୭.୮.୦୬ | ଡଃ ଗୋକୁଳାନନ୍ଦ ମହାପାତ୍ର | ଡଃ ରାଧାନାଥ ରଥ | – | ଡଃ ସୁବାସିନୀ ଲେଙ୍କା |
| ୫୯ତମ | ୭.୮.୦୭ | ଡଃ ଗୋକୁଳାନନ୍ଦ ମହାପାତ୍ର | ପ୍ର. ସ୍ୱାଧୀନାନନ୍ଦ ପଟ୍ଟନାୟକ | – | ଡଃ କୁଳମଣି ସାମଲ |
| ୬୦ତମ | ୭.୮.୦୮ | ଡଃ ଗୋକୁଳାନନ୍ଦ ମହାପାତ୍ର | ଡାଃ ଗୌରୀଶଙ୍କର ଆଚାର୍ଯ୍ୟ | – | ଇଂ ଧୀରେନ୍ଦ୍ରକୁମାର ବିଶ୍ୱାଳ |
| ୬୧ତମ | ୭.୮.୦୯ | ଡଃ ଗୋକୁଳାନନ୍ଦ ମହାପାତ୍ର | ଇଂ ଗୋବିନ୍ଦ ଚନ୍ଦ୍ର ସାହୁ | – | ଡଃ ନାରାୟଣ ଚନ୍ଦ୍ର ପାଢ଼ୀ |

# ସମିତିଦ୍ୱାରା ପ୍ରଦତ୍ତ ବିଭିନ୍ନ ପୁରସ୍କାର ସଂପର୍କୀୟ ବିବରଣୀ

## ପୁରସ୍କାର ସମ୍ପର୍କୀୟ ନିୟମାବଳୀ

୧. ପୁରସ୍କାର ନିମିତ୍ତ ସମସ୍ତ ଅର୍ଥ ସ୍ଥାୟୀ ଜମା ହିସାବରେ ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ସିଟି ଶାଖା, କଟକରେ ଜମା ରହିବ । ଏହାର ବାର୍ଷିକ ସୁଧ ସମିତିର ସେଭିଂସ୍ ବ୍ୟାଙ୍କ୍ ଆକାଉଣ୍ଟକୁ ସ୍ଥାନାନ୍ତରିତ ହେବ ଏବଂ ତାହା ପୁରସ୍କାର, ଉପଢୌକନ ଓ ମାନପତ୍ର ଇତ୍ୟାଦି ବାବଦକୁ ବ୍ୟୟ କରାଯିବ ।

୨. ପୁରସ୍କାର ବର୍ଷର ପୂର୍ବ ବର୍ଷ ଜୁଲାଇ ୧ ତାରିଖରୁ ପୁରସ୍କାର ବର୍ଷର ଜୁନ୍ ୩୦ ତାରିଖରଅବଧିକୁ ହିଁ ପୁରସ୍କାର ପ୍ରଦାନ ନିମନ୍ତେ ବିଚାରକୁ ନିଆଯିବ ।

୩. ପ୍ରତିବର୍ଷ ଜୁଲାଇ ୩୦ ତାରିଖ ସୁଦ୍ଧା ବିଚାରକ ମଣ୍ଡଳୀ ମନୋନୀତ ହେବେ । ବିଚାରକ ମଣ୍ଡଳୀରେ ସମିତିର ସମ୍ପାଦକ ଓ ଯୁଗ୍ମ ସମ୍ପାଦକ ଆବାହକରୂପେ ଏବଂ ଉପାଧ୍ୟକ୍ଷ ଅନ୍ୟତମ ସଦସ୍ୟରୂପେ ସ୍ଥାନ ପାଇବେ । ପୁରସ୍କାର ମନୋନୟନପାଇଁ ଉକ୍ତ ବିଚାରକ ମଣ୍ଡଳୀ ସମିତିର ସାଧାରଣ ଅଧିବେଶନରେ ସ୍ଥିରୀକୃତ ହେବେ ।

୪. ବିଜ୍ଞାନ ପ୍ରବନ୍ଧ, ବିଜ୍ଞାନ କୁଇଜ୍ ଓ ବିଜ୍ଞାନ ତର୍କ ପ୍ରତିଯୋଗିତା ପୁରସ୍କାର ବର୍ଷର ସେପ୍ଟେମ୍ବର ମାସ ୧୫ ତାରିଖ ସୁଦ୍ଧା ସମ୍ପନ୍ନ ହେବ ।

୫. ପୁରସ୍କାର ବର୍ଷର ସେପ୍ଟେମ୍ବର ୩୦ ତାରିଖ ଭିତରେ ବିଚାରକ ମଣ୍ଡଳୀ ସେମାନେ ମନୋନୟନ କରିଥିବା ସମ୍ମାନ ଓ ପୁରସ୍କାରର ଫଳାଫଳକୁ ସମିତିକୁ ପ୍ରଦାନ କରିବେ ।

୬. ଇଚ୍ଛୁକ ପ୍ରାର୍ଥୀଙ୍କ ଅବଗତି ନିମନ୍ତେ ପୁରସ୍କାର ସମ୍ବନ୍ଧୀୟ ବିଜ୍ଞାପନଗୁଡ଼ିକ 'ବିଜ୍ଞାନାଲୋକ' କିମ୍ବା ଅନ୍ୟାନ୍ୟ ସମ୍ବାଦପତ୍ରରେ ପ୍ରକାଶ କରିବା ନିମନ୍ତେ ବ୍ୟବସ୍ଥା କରାଯିବ ।

୭. ପୁରସ୍କାର ଅର୍ଥ ସହ କୃତୀ ଛାତ୍ରଛାତ୍ରୀମାନଙ୍କୁ ଯୋଗ୍ୟତା ପ୍ରମାଣପତ୍ର ପ୍ରଦତ୍ତ ହେବ ଏବଂ ଅନ୍ୟମାନଙ୍କୁ ମାନପତ୍ର ଓ ଆବଶ୍ୟକସ୍ଥଳେ ଉପାୟନ ପ୍ରଦତ୍ତ ହେବ । ଅଳ୍ପ ମୂଲ୍ୟର ପୁରସ୍କାର ପୁସ୍ତକ କିମ୍ବା ଦ୍ରବ୍ୟ ହିସାବରେ ପ୍ରଦତ୍ତ ହେବ ।

୮. ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ସ୍ମାରକୀ ବକ୍ତୃତା ପ୍ରଦାନକାରୀଙ୍କୁ ମାନପତ୍ର ପ୍ରଦାନ କରା ନ ଯାଇ ଉପଢୌକନ ଏବଂ ତାଙ୍କର ଯାତାୟାତ ଖର୍ଚ୍ଚ ପ୍ରଦାନ କରାଯିବ ।

୯. ଡାକ୍ତର ନିରଞ୍ଜନ ତ୍ରିପାଠୀ ବିଜ୍ଞାନ ପୁରସ୍କାର ପାଇଥିବା ଛାତ୍ରଛାତ୍ରୀ ଏବଂ ବଳରାମ ସାମଲ ସ୍ମାରକୀ ପୁରସ୍କାର ପାଇଥିବା ଶିକ୍ଷକଙ୍କର ଯାତାୟାତ ଖର୍ଚ୍ଚ ସମିତି ବହନ କରିବ ।

୧୦. ବଳରାମ ସାମଲ ସ୍ମାରକୀ ପୁରସ୍କାର, ନିତ୍ୟାନନ୍ଦ ସ୍ମାରକୀ ପୁରସ୍କାର, ବିଜୟ ଗୋବିନ୍ଦ ସ୍ମାରକୀ ପୁରସ୍କାର ଏବଂ ଫୁଲଦେବୀ ସ୍ମାରକୀ ପୁରସ୍କାରକୁ ଛାଡ଼ିଦେଲେ ଅନ୍ୟ ପୁରସ୍କୃତ ବ୍ୟକ୍ତି ପରବର୍ତ୍ତୀ ଦଶ ବର୍ଷପାଇଁ ପୁନର୍ବାର ପୁରସ୍କୃତ ହୋଇପାରିବେ ନାହିଁ ।

୧୧. ଛାତ୍ରଛାତ୍ରୀମାନଙ୍କ ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ଓ ଅନ୍ୟାନ୍ୟ ପୁରସ୍କାର ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯିବ ।

୧୨. ପୁରସ୍କାର / ସମ୍ମାନ ସଂକ୍ରାନ୍ତରେ ମନୋନୟନ କମିଟିର ନିଷ୍ପତ୍ତିକୁ ହିଁ ଚୂଡ଼ାନ୍ତ ବୋଲି ଧରାଯିବ ।



# ବିଭିନ୍ନ ସମ୍ମାନ ଓ ପୁରସ୍କାରର ବିବରଣୀ

### ୧. ବିଜ୍ଞାନ ପ୍ରଚାର ସମିତି ସମ୍ମାନ

ବିଜ୍ଞାନ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିବା ସମିତିର ଜଣେ କିମ୍ବା ଦୁଇ ଜଣ ବରିଷ୍ଠ ସଭ୍ୟଙ୍କୁ ପ୍ରତିବର୍ଷ ବାର୍ଷିକ ଉତ୍ସବରେ ଏହି ସମ୍ମାନ ପ୍ରଦାନ କରାଯାଇଥାଏ । ଏଥିପାଇଁ ଆବଶ୍ୟକ ଅର୍ଥ ସମିତି ବହନ କରିଥାଏ ।

### ୨. ବିଜ୍ଞାନ ରତ୍ନ ସମ୍ମାନ

ସମିତିର ପ୍ରତିଷ୍ଠାତା ସଦସ୍ୟ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଓ ପ୍ରଫେସର ସୁକୁମାର ଆଦିତ୍ୟଙ୍କଦ୍ୱାରା ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତି ଦୁଇ ବର୍ଷରେ ଥରେ ବିଜ୍ଞାନରେ ଉତ୍କୃଷ୍ଟ ମାନର ଉଚ୍ଚତର ଗବେଷଣା କରିଥିବା ଜଣେ ଓଡ଼ିଆ ବୈଜ୍ଞାନିକଙ୍କୁ ଏହି ସମ୍ମାନ ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଇଥାଏ ।

### ୩. ସୁବର୍ଣ୍ଣ ସ୍ମାରକୀ ସମ୍ମାନ

ସମିତିର ବରିଷ୍ଠ ସଦସ୍ୟ ପ୍ରଫେସର କୁଳମଣି ସାମଲଙ୍କ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ସମିତିର ଜଣେ ଜୀବିତ ବୟୋଜ୍ୟେଷ୍ଠ ସଭ୍ୟ /ସଭ୍ୟାଙ୍କୁ ତାଙ୍କର ଉତ୍ସର୍ଗୀକୃତ କାର୍ଯ୍ୟପାଇଁ ଏହି ସମ୍ମାନ ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଏ । ଏହି ସମ୍ମାନକୁ ମନୋନୟନ କରିବାପାଇଁ ମାଟ୍ରିକ୍ ସାର୍ଟିଫିକେଟ୍‌ର ଜନ୍ମ ତାରିଖରୁ ବୟସ ଗଣନା କରାଯାଇଥାଏ । କୌଣସି ବର୍ଷର ଯୋଗ୍ୟ ବିବେଚିତ ସଭ୍ୟ ସ୍ୱାସ୍ଥ୍ୟଗତ କିମ୍ବା ଅନ୍ୟ କୌଣସି କାରଣରୁ ସେ ବର୍ଷର ବାର୍ଷିକ ଉତ୍ସବରେ ଅନୁପସ୍ଥିତ ରହିଲେ ତାଙ୍କ ତରଫରୁ ଅନ୍ୟ କେହି ତାଙ୍କ ସମ୍ମାନ ଗ୍ରହଣ କରି ତାଙ୍କ ନିକଟକୁ ପଠାଇବାର ବ୍ୟବସ୍ଥା କରିବେ । କୌଣସି ଅନିବାର୍ଯ୍ୟ କାରଣରୁ ବାର୍ଷିକ ଉତ୍ସବ ହୋଇ ନ ପାରିଲେ ସେ ବର୍ଷର ସମ୍ମାନ ପରବର୍ଷ ବାର୍ଷିକ ଉତ୍ସବରେ ଦିଆଯିବ । ଜଣେ ସଭ୍ୟ ତାଙ୍କ ଜୀବନକାଳ ଭିତରେ ଥରେ ମାତ୍ର ଉକ୍ତ ସମ୍ମାନରେ ସମ୍ମାନିତ ହେବେ । ସେ ସମ୍ମାନପାଇଁ ମନୋନୀତ ହୋଇଥିବା ବର୍ଷରେ ସମିତି ତରଫରୁ ଅନ୍ୟ କୌଣସି ସମ୍ମାନ ବା ପୁରସ୍କାର ପାଉଥିଲେ ମଧ୍ୟ ଉକ୍ତ ସମ୍ମାନ ପାଇବାରୁ ବଞ୍ଚିତ ହେବେ ନାହିଁ ।

### ୪. ହୀରକ ସ୍ମାରକୀ ସମ୍ମାନ

ସମିତିର ହୀରକ ଜୟନ୍ତୀ ସମାରୋହଠାରୁ ଏହି ସମ୍ମାନର ଅୟମାରମ୍ଭ । ଡାକ୍ତର ଗୋପାଳ ଚନ୍ଦ୍ର କର ଓ ତାଙ୍କ ସହଧର୍ମିଣୀ ଡାକ୍ତର ଗାୟତ୍ରୀ ଦେବୀଙ୍କ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତି ବର୍ଷ ଏହି ସମ୍ମାନ ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯିବ । ବିଜ୍ଞାନକୁ ଲୋକପ୍ରିୟ କରିବାପାଇଁ ଯେଉଁ ଲେଖକ ଓଡ଼ିଆରେ ଅନ୍ୟୂନ ୧୦ ଖଣ୍ଡି ବିଜ୍ଞାନ ପୁସ୍ତକ ରଚନା କରିଥିବେ, ସେ ଏହି ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହେବେ । ଏକାଧିକ ଯୋଗ୍ୟ ବ୍ୟକ୍ତି ଥିଲେ ଲେଖକଙ୍କ ବରିଷ୍ଠତାକୁ ଅଗ୍ରାଧିକାର ଦିଆଯିବ ।

### ୫. ରାୟସାହେବ ବନବିହାରୀ ମହାନ୍ତି ସମ୍ମାନ

ଓଡ଼ିଶାର ପ୍ରଥମ ଇଞ୍ଜିନିୟରିଂ ସ୍ନାତକ ଦିବଂଗତ ରାୟସାହେବ ବନବିହାରୀ ମହାନ୍ତିଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କ ନାତୁଣୀ ଡାକ୍ତର ବାସନ୍ତୀ ବହିଦାର ଓ ନାତୁଣୀ ଜ୍ୱାଇଁ ପ୍ରଫେସର ଡାକ୍ତର ସୁଦର୍ଶନ ପଟ୍ଟନାୟକଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ବିଜ୍ଞାନକୁ ଜନପ୍ରିୟ କରିବାରେ ଦୁଇ ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଧରି ଉତ୍ସର୍ଗୀକୃତ ଭାବରେ ଉଦ୍ୟମ କରିଆସୁଥିବା ବ୍ୟକ୍ତିଙ୍କୁ ପ୍ରତିବର୍ଷ ବାର୍ଷିକ ଉତ୍ସବରେ ଏହି ସମ୍ମାନପ୍ରଦାନ କରାଯାଇଥାଏ ।

### ୬. ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ସ୍ମାରକୀ ବକ୍ତୃତା ସମ୍ମାନ

ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ ଓ ହସ୍‌ପିଟାଲର ପୂର୍ବତନ ଅଧ୍ୟକ୍ଷ ତଥା ପୂର୍ବତନ ସ୍ୱାସ୍ଥ୍ୟ ସେବା ନିର୍ଦ୍ଦେଶକ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ସମିତିର ଆଜୀବନ ସଦସ୍ୟା ଡାକ୍ତର ପ୍ରତିଭା ସେନ୍ ଓ ଆଜୀବନ ସଭ୍ୟ ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ସମିତିର ବାର୍ଷିକ ଉତ୍ସବକୁ ମୁଖ୍ୟ ବକ୍ତା ରୂପେ ନିମନ୍ତ୍ରିତ ହେଉଥିବା ବୈଜ୍ଞାନିକଙ୍କୁ ଏହି ସ୍ମାରକୀ ବକ୍ତୃତା ସମ୍ମାନ ପ୍ରଦାନ କରାଯାଇଥାଏ ।

### ୭. ଗୋକୁଳାନନ୍ଦ ମହାପାତ୍ର ସମ୍ମାନ

ସମିତିର ହୀରକ ଜୟନ୍ତୀ ସମାରୋହଠାରୁ ଏହି ସମ୍ମାନର ଅୟମାରମ୍ଭ । ସମିତିର ସଭ୍ୟମାନଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ସମିତିର ବାର୍ଷିକ ଉତ୍ସବକୁ ମୁଖ୍ୟ ଅତିଥିରୂପେ ନିମନ୍ତ୍ରିତ ହୋଇ ଆସୁଥିବା ବ୍ୟକ୍ତିଙ୍କୁ ଏହି ସମ୍ମାନ ପ୍ରଦାନ କରାଯାଇଥାଏ । ସମିତିର ପ୍ରତିଷ୍ଠାତା ସଦସ୍ୟ ତଥା ପ୍ରଥମ ସମ୍ପାଦକ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ସମ୍ମାନାର୍ଥେ ଏହା ଉଦ୍ଦିଷ୍ଟ ।

### ୮. ଡାକ୍ତର ବିକ୍ରମ ଦାସ ସମ୍ମାନ

ସମିତିର ପୂର୍ବତନ ବରିଷ୍ଠ ସଦସ୍ୟ ସ୍ୱର୍ଗତ ପ୍ରଫେସର ବିକ୍ରମ ଦାସଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ଏହି ସମ୍ମାନ ପ୍ରତିବର୍ଷ ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଇଥାଏ । ସମିତିର ଅଧିବେଶନରେ ପଠିତ କିମ୍ବା ଅନ୍ୟତ୍ର ପ୍ରକାଶିତ ସ୍ୱାସ୍ଥ୍ୟ ବିଜ୍ଞାନ ସମ୍ପର୍କିତ ଲୋକପ୍ରିୟ ଲେଖା କିମ୍ବା ସ୍ୱାସ୍ଥ୍ୟବିଜ୍ଞାନ ସମ୍ପର୍କିତ ଗବେଷଣାତ୍ମକ ନିବନ୍ଧର ଲେଖକ ଏହି ସମ୍ମାନପାଇଁ ଯୋଗ୍ୟ ବିବେଚିତ ହୋଇଥାନ୍ତି ।

### ୯. ବିନୋଦ କାନୁନ୍‌ଗୋ ବିଜ୍ଞାନ ବାଗ୍ମିତା ସମ୍ମାନ

ସମିତିର ବରିଷ୍ଠ ସଦସ୍ୟା ଡାକ୍ତର ପ୍ରତିଭା ସେନ୍ ଓ ସଦସ୍ୟ ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ବକ୍ତୃତା ମାଧ୍ୟମରେ ବିଜ୍ଞାନର ପ୍ରଚାର, ପ୍ରସାର ଓ ଜନପ୍ରିୟ କରିବାପାଇଁ ପ୍ରୟାସ କରୁଥିବା ବ୍ୟକ୍ତିବିଶେଷଙ୍କୁ ପ୍ରତିବର୍ଷ ସମିତିର ବାର୍ଷିକ ଉତ୍ସବରେ ଏହି ସମ୍ମାନ ପ୍ରଦାନ କରାଯାଇଥାଏ ।

### ୧୦. ଡାକ୍ତର ମହାମାୟା ପଟ୍ଟନାୟକ ସ୍ମୃତି ସମ୍ମାନ

ସ୍ୱର୍ଗତ ଡାକ୍ତର ମହାମାୟା ପଟ୍ଟନାୟକଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ସମିତିର ବରିଷ୍ଠ ସଦସ୍ୟା ଡାକ୍ତର ଯୋଗମାୟା ପଟ୍ଟନାୟକ ଓ ତାଙ୍କ ପରିବାରଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଜଣେ କୃତୀ ବିଜ୍ଞାନ ଗବେଷିକାଙ୍କୁ ସମିତିର ବାର୍ଷିକ ଉତ୍ସବରେ ଏହି ସମ୍ମାନ ପ୍ରଦାନ କରାଯାଇଥାଏ ।

### ୧୧. ନିମାଇଁ-କିରଣ ବିଜ୍ଞାନ ପୁସ୍ତକ ପ୍ରକାଶକ ସମ୍ମାନ

ସମିତିର ବରିଷ୍ଠ ସଦସ୍ୟ ପ୍ରଫେସର ଡାକ୍ତର ନିମାଇଁ ଚରଣ ପଣ୍ଡା ଓ ତାଙ୍କ ସହଧର୍ମିଣୀ କିରଣଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ କ୍ରମାଗତ ପୂର୍ବ ତିନି ବର୍ଷ ଧରି ଏକାଧିକ ଉପାଦେୟ ଓଡ଼ିଆ ବିଜ୍ଞାନ ପୁସ୍ତକ ପ୍ରକାଶ କରିଥିବା ପ୍ରକାଶକ/ପ୍ରକାଶନସଂସ୍ଥାକୁ ପ୍ରତିବର୍ଷ ବାର୍ଷିକ ଉତ୍ସବରେ ଏହି ସମ୍ମାନ ପ୍ରଦାନ କରାଯାଇଥାଏ ।

### ୧୨. ସୁକୁମାର-ସୁନନ୍ଦା ଜନପ୍ରିୟ ବିଜ୍ଞାନ ପୁରସ୍କାର

ବିଶିଷ୍ଟ ରସାୟନବିତ୍ ତଥା ସମିତିର ପ୍ରତିଷ୍ଠାତା ସଦସ୍ୟ ପ୍ରଫେସର ସୁକୁମାର ଆଦିତ୍ୟ ଓ ତାଙ୍କ ଧର୍ମପତ୍ନୀ ସୁନନ୍ଦାଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଅନ୍ତତଃ ଖଣ୍ଡିଏ ଉଚ୍ଚକୋଟୀର ଓଡ଼ିଆ ବିଜ୍ଞାନ ପୁସ୍ତକର ରଚୟିତାଙ୍କୁ ସମିତିର ବାର୍ଷିକ ଉତ୍ସବରେ ଏହି ପୁରସ୍କାର ପ୍ରଦାନ କରାଯାଇଥାଏ ।

### ୧୩. ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ସ୍ମୃତି ପୁରସ୍କାର

ସ୍ୱର୍ଗତ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କ ପରିବାରଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ 'ବିଜ୍ଞାନାଲୋକ' ପତ୍ରିକାରେ ପ୍ରକାଶିତ କିମ୍ବା ସମିତିର ସାଧାରଣ ଅଧିବେଶନରେ ପଠିତ ସର୍ବଶ୍ରେଷ୍ଠ ବିଜ୍ଞାନ ପ୍ରବନ୍ଧର ଲେଖକଙ୍କୁ ସମିତିର ବାର୍ଷିକ ଉତ୍ସବରେ ଏହି ପୁରସ୍କାର ପ୍ରଦାନ କରାଯାଇଥାଏ ।

### ୧୪. ପ୍ରଫେସର ଗୋପୀନାଥ ପ୍ରସାଦ ମହାନ୍ତି ପ୍ରତିଭା ପୁରସ୍କାର

ନ୍ୟାୟିକ ଭେଷଜତତ୍ତ୍ୱ ଓ ବିଷ ବିଜ୍ଞାନ ବିଭାଗର ପୂର୍ବତନ ପ୍ରଫେସର ସ୍ୱର୍ଗତ ଡାକ୍ତର ଗୋପୀନାଥ ପ୍ରସାଦ ମହାନ୍ତିଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ବିଭିନ୍ନ ପତ୍ରପତ୍ରିକାରେ ଓଡ଼ିଆ ଭାଷାରେ ପ୍ରକାଶ ପାଇଥିବା ସର୍ବନିମ୍ନ ୧୦ଟି ବିଜ୍ଞାନ ପ୍ରବନ୍ଧର ଲେଖକ କିମ୍ବା ପ୍ରକାଶିତ ଅନ୍ତତଃ ଗୋଟିଏ ଓଡ଼ିଆ ବିଜ୍ଞାନ ପୁସ୍ତକର ଯୁବ ଲେଖକଙ୍କୁ ସମିତିର ବାର୍ଷିକ ଉତ୍ସବରେ ଏହି ପୁରସ୍କାର ପ୍ରଦାନ କରାଯାଇଥାଏ । ଏହି ପୁରସ୍କାରପାଇଁ ଯୋଗ୍ୟ ବିବେଚିତ ପ୍ରାର୍ଥୀଙ୍କ ବୟସ ୪୫ ବର୍ଷରୁ କମ୍ ହୋଇଥିବା ଆବଶ୍ୟକ ।

### ୧୫. କୁମୁଦିନୀ-ଗୋକୁଳାନନ୍ଦ ପରିବେଶ ପୁରସ୍କାର

ସମିତିର ପ୍ରତିଷ୍ଠାତା ସଦସ୍ୟ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଓ ତାଙ୍କ ସହଧର୍ମିଣୀ ସ୍ୱର୍ଗତା କୁମୁଦିନୀ ଦେବୀଙ୍କ

ସମ୍ମାନାର୍ଥେ ତାଙ୍କର ନାତି ଇଂ. ସୁରଜିତ୍ ପଟ୍ଟନାୟକଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଜଣେ ବିଶିଷ୍ଟ ପରିବେଶବିତ୍‌ଙ୍କୁ ଏହି ପୁରସ୍କାର ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଇଥାଏ ।

### ୧୬. କୁମୁଦିନୀ ସ୍ମୃତି ପୁରସ୍କାର

ସମିତିର ପ୍ରତିଷ୍ଠାତା ସଦସ୍ୟ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କଦ୍ୱାରା ତାଙ୍କ ଦିବଂଗତ ସହଧର୍ମିଣୀ କୁମୁଦିନୀ ଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀଜମାର ସୁଧରୁ ପ୍ରତିବର୍ଷ ଗୃହ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତ ଜଣେ ମହିଳା ଗବେଷିକାଙ୍କୁ ଏହି ପୁରସ୍କାର ସମିତିର ବାର୍ଷିକ ଉତ୍ସବରେ ପ୍ରଦାନ କରାଯାଇଥାଏ ।

### ୧୭. ଡାକ୍ତର ନିରଞ୍ଜନ ତ୍ରିପାଠୀ ବିଜ୍ଞାନ ପ୍ରତିଭା ପୁରସ୍କାର

ଡାକ୍ତର ନିରଞ୍ଜନ ତ୍ରିପାଠୀଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ବିଜ୍ଞାନରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

ଏକାଧିକ ଛାତ୍ର/ଛାତ୍ରୀ ବିଜ୍ଞାନରେ ସମାନ ନମ୍ବର ରଖିଥିଲେ ସର୍ବମୋଟ ଅଧିକ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ ଯୋଗ୍ୟ ବିବେଚିତ ହେବେ । ସର୍ବୋଚ୍ଚ ନମ୍ବର ସମାନ ହୋଇଥିଲେ ଗଣିତରେ ଅଧିକ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ ପୁରସ୍କୃତ ହେବେ । ଗଣିତରେ ମଧ ସମାନ ନମ୍ବର ରହିଥିଲେ ଜନ୍ମ ତାରିଖ ଭିତ୍ତିରେ ଯେଉଁ ଛାତ୍ର/ଛାତ୍ରୀ ବେଶୀ ବୟସର ହୋଇଥିବେ, ସେ ପୁରସ୍କାର ପାଇବାପାଇଁ ଯୋଗ୍ୟ ବିବେଚିତ ହେବେ ।

### ୧୮. ବଳରାମ ସାମଲ ସ୍ମାରକୀ ପୁରସ୍କାର

ପଦାର୍ଥ ବିଜ୍ଞାନର ଅବସରପ୍ରାପ୍ତ ପ୍ରଫେସର ତଥା ସମିତିର ବରିଷ୍ଠ ସଦସ୍ୟ ଡକ୍ଟର କୁଳମଣି ସାମଲଙ୍କଦ୍ୱାରା ନିଜ ଜ୍ୟେଷ୍ଠଭ୍ରାତା ଦିବଂଗତ ବଳରାମ ସାମଲଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଡାକ୍ତର ନିରଞ୍ଜନ ତ୍ରିପାଠୀ ପ୍ରତିଭା ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିବା ଛାତ୍ର/ଛାତ୍ରୀ ଅଧ୍ୟୟନ କରିଥିବା ବିଦ୍ୟାଳୟର ବରିଷ୍ଠ ବିଜ୍ଞାନ ଶିକ୍ଷକଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

### ୧୯. ବୈଷ୍ଣବ ଚରଣ ସିଂହ ପ୍ରତିଭା ପୁରସ୍କାର

ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସିଂହଙ୍କ ଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ର/ଛାତ୍ରୀଙ୍କୁ ସମିତିର ପ୍ରତିଷ୍ଠା ଦିବସରେ ଏହି ପୁରସ୍କାର ପ୍ରଦାନ କରାଯାଇଥାଏ ।

### ୨୦. ପୂର୍ଣ୍ଣିମା ଦେବୀ ସ୍ମାରକୀ ପୁରସ୍କାର

ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର ଡକ୍ଟର ଭାସ୍କର ଚନ୍ଦ୍ର ଦାଶଙ୍କଦ୍ୱାରା ତାଙ୍କର ମା' ପୂର୍ଣ୍ଣିମା ଦେବୀଙ୍କର ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀ ଅଧ୍ୟୟନ କରିଥିବା ବିଦ୍ୟାଳୟର ପ୍ରଧାନ ଶିକ୍ଷକ/ଶିକ୍ଷୟିତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

### ୨୧. ଅଞ୍ଜନା ପ୍ରଧାନ ସ୍ମୃତି ପୁରସ୍କାର

ଶିକ୍ଷା ବିଭାଗର ବରିଷ୍ଠ ପ୍ରାଧ୍ୟାପକ ଶ୍ରୀ ରମାକାନ୍ତ ଜେନା ତାଙ୍କର ଧର୍ମପତ୍ନୀ ଅଞ୍ଜନା ପ୍ରଧାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦାନ କରିଥିବା ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ଛାତ୍ରୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

### ୨୨. ମହେନ୍ଦ୍ର କୁମାର କାୟସ୍ଥ ପ୍ରତିଭା ପୁରସ୍କାର

ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ମହେନ୍ଦ୍ର କୁମାର କାୟସ୍ଥଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ କଟକ ଜିଲ୍ଲାରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀମାନଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୩. ପ୍ରୀତି ମହାପାତ୍ର ସ୍ମୃତି ପୁରସ୍କାର**

ଗଣିତ ବିଭାଗର ଦିବଂଗତ ପ୍ରାଧାପିକା ପ୍ରୀତି ମହାପାତ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କର ପରିବାର ବର୍ଗଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ଗଣିତରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୪. ହରେକୃଷ୍ଣ ମିଶ୍ର ସ୍ମୃତି ପୁରସ୍କାର**

ଭୂଗୋଳ ବିଭାଗର ପ୍ରାଧାପକ ଓ ବିଭାଗୀୟ ମୁଖ୍ୟ ଡକ୍ଟର ବିଜୟ କୁମାର ମିଶ୍ର ତାଙ୍କ ପିତା ଦିବଂଗତ ହରେକୃଷ୍ଣ ମିଶ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦାନ କରିଥିବା ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଓଡ଼ିଶା ମାଧମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ଗଣିତରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ ଅଧୟନ କରିଥିବା ବିଦ୍ୟାଳୟର ଉନ୍ନତି ସାଧନପାଇଁ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୫. ପ୍ରଫେସର ଗଦାଧର ମିଶ୍ର ପ୍ରତିଭା ପୁରସ୍କାର**

ଉଦ୍ଭିଦ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର ସ୍ୱର୍ଗତ ଡକ୍ଟର ଗଦାଧର ମିଶ୍ରଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ରାଜ୍ୟର ଉଚ୍ଚ ମାଧମିକ ଶିକ୍ଷା ପରିଷଦଦ୍ୱାରା ପରିଚାଳିତ ବାର୍ଷିକ ଯୁକ୍ତ ଦୁଇ ବିଜ୍ଞାନ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ରାଜ୍ୟରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୬. ଶ୍ରଦ୍ଧାମଣି-ଆର୍ତ୍ତତ୍ରାଣ ପୁରସ୍କାର**

ସମିତିର ବରିଷ୍ଠ ସଦସ୍ୟ ଡାକ୍ତର ଶୈଳେଶ୍ୱର ନନ୍ଦ ତାଙ୍କ ସ୍ୱର୍ଗୀୟ ମାତା-ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମିତିକୁ ପ୍ରଦାନ କରିଥିବା ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ପରିଚାଳିତ ଏମ୍.ବି.ବି.ଏସ୍. ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୭. ଡାକ୍ତର ରବି ରଞ୍ଜନ ସାହୁ ପ୍ରତିଭା ପୁରସ୍କାର**

ସମିତିର ବରିଷ୍ଠ ସଦସ୍ୟ ଡାକ୍ତର ରବିରଞ୍ଜନ ସାହୁଙ୍କଦ୍ୱାରା ସମିତିକୁ ପ୍ରଦତ୍ତ ଅର୍ଥର ସ୍ଥାୟୀ ଜମାର ସୁଧରୁ ପ୍ରତିବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ପରିଚାଳିତ ବି.ଡି.ଏସ୍. ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୨୮. ବିଜୟ ଗୋବିନ୍ଦ ସ୍ମାରକୀ ପୁରସ୍କାର**

**୨୯. ଫୁକଦେବୀ ସ୍ମାରକୀ ପୁରସ୍କାର**

**୩୦. ନିତ୍ୟାନନ୍ଦ ସ୍ମାରକୀ ପୁରସ୍କାର**

ରସାୟନ ବିଜ୍ଞାନ ବିଭାଗର ଅବସରପ୍ରାପ୍ତ ପ୍ରଫେସର ତଥା ସମିତିର ପ୍ରତିଷ୍ଠାତା ସଦସ୍ୟ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ତାଙ୍କ ପୂଜ୍ୟ ପିତୃଦେବ ଦିବଂଗତ ବିଜୟ ଗୋବିନ୍ଦଙ୍କ ସ୍ମୃତି ଉଦ୍ଦେଶ୍ୟରେ ବିଜୟ ଗୋବିନ୍ଦ ସ୍ମାରକୀ ପୁରସ୍କାର, ପୂଜ୍ୟ ମାତୃଦେବୀ ଦିବଂଗତ ଫୁକଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ଫୁକଦେବୀ ସ୍ମାରକୀ ପୁରସ୍କାର ଏବଂ ପୂଜ୍ୟ ଜ୍ୟେଷ୍ଠଭ୍ରାତା ଦିବଂଗତ ନିତ୍ୟାନନ୍ଦଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିତ୍ୟାନନ୍ଦ ସ୍ମାରକୀ ପୁରସ୍କାର ବାବଦକୁ ସମିତିକୁ ପ୍ରଦାନ କରିଥିବା ଅର୍ଥର ଜମାରାଶିରୁ ପ୍ରାପ୍ତ ବାର୍ଷିକ ସୁଧରୁ ପ୍ରତିବର୍ଷ ସମିତିଦ୍ୱାରା ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ମଧରେ ଅନୁଷ୍ଠିତ ହେଉଥିବା ଯଥାକ୍ରମେ ବିଜ୍ଞାନ କୁଇଜ୍, ବିଜ୍ଞାନ ବିଷୟ ଆଧାରିତ ତର୍କ ଓ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ ।

**୩୧. ବିଜ୍ଞାନ ପ୍ରଚାର ସମିତିର ସ୍ୱତନ୍ତ୍ର ପୁରସ୍କାର**

ସମିତିଦ୍ୱାରା ପ୍ରତିବର୍ଷ ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ମଧରେ ଅନୁଷ୍ଠିତ କରାଯାଉଥିବା ବିଜ୍ଞାନ କୁଇଜ, ତର୍କ ଓ ପ୍ରବନ୍ଧ ପ୍ରତିଯୋଗିତାରେ ୨ୟ ଓ ୩ୟ ସ୍ଥାନ ଅଧିକାର କରିଥିବା ଛାତ୍ର/ଛାତ୍ରୀଙ୍କୁ ଏହି ପୁରସ୍କାର ସମିତିର ପ୍ରତିଷ୍ଠା ଦିବସରେ ପ୍ରଦାନ କରାଯାଇଥାଏ । ଏଥିପାଇଁ ଆବଶ୍ୟକ ଅର୍ଥ ସମିତି ତା'ର ନିଜସ୍ୱ ପାଣ୍ଠିରୁ ବିନିଯୋଗ କରିଥାଏ ।



